# ମଞ୍ଜୁଳା କାବ୍ୟମଞ୍ଜୁଷା



*(ଅନେକ ଛୋଟ ଛୋଟ କବିତାର ସଞ୍ଚୟନ)*

**ରଚୟିତ୍ରୀ: ମଞ୍ଜୁବାଳା କବି**

# ଶାଶ୍ୱତ କବି

କବିତାର ପଦ
ହୃଦନିର୍ଗତ
ଅନ୍ତର୍ନିହିତ
ପରମ ଶାଶ୍ୱର ଗୀତ;

ସେ ଅମୃତ ଝର
ଝରିଲେ ଅନ୍ତରେ
ଶୁଣିଲେ କର୍ଣ୍ଣରେ
ଆତ୍ମା ହୁଏ ପରିତୃପ୍ତ ||
-୧

ହସ୍ତେ ଧରି କେହି
ଶିଖାଇ ଲେଖାଇ
ପରିଚୟ ଦେଇ
ଛୁଏଁ ନା ତୁଙ୍ଗ ଶିଖର;

ସଂଗୀତ ରଚନା
ନିତ୍ୟ ଉପାସନା
ହୃଦୟେ ଅର୍ଚ୍ଚନା
ସତ୍ୟ ଶିବ ଓ ସୁନ୍ଦର||
-୨

ପୂଜ୍ୟ ଆଦିକବି
ଯେତେ ମହାକବି
ଚାଲିଗଲେ ରଚି
ଅନୁପମ ଗୀତି ମାଳା;

କାଲି ପରି ଆଜି
ରହିଛି ବିରାଜି
ଜନ ମାନସରେ
ଝରୁଛି ଅମୃତ ଧାରା ||
-୩

ଶବ୍ଦକୋଷ ଯେତେ
ରହିଛି ବିସ୍ତୃତେ
ଉନ୍ମୁକ୍ତ ଆକାଶେ
ତରଙ୍ଗିତ ଅସ୍ତିତ୍ୱରେ;

ନା ଲାଗେ ବିପଣୀ
ନା ଲାଗେ ଟିପ୍ପଣୀ
ତଥାପି ଝରେ ତା'
କର୍ମ,ଭକ୍ତି,ସାଧନାରେ ||
-୪

ମଞ୍ଜୁବାଳା କବି
[ ଓଁ ଶାନ୍ତିଃ]

# ଜୀବନ୍ତ କବି

********************************

ଲେଖୁ ଲେଖୁ କେତେ ଲେଖି ଚାଲିଗଲି
ଗହନ ମନର କଥା
କିଛି ରହିଗଲା କିଛି ବହିଗଲା
ହୃଦୟ ତଳର ବ୍ୟଥା ।।

ଦୟା କ୍ଷମା ପ୍ରେମ ସୃଷ୍ଟିର ନିୟମ
ଲେଖିଲି କାଗଜ ଭରି
ଗଡ଼ି ଗଲା ଦିନ ଚାଲି ଗଲା ରାତି
ଅହଂକାରେ ଗଲି ଭରି ।।

ଆଖି ଫେରାଇଲି ପଛକୁ ଚାହିଁଲି
ଦେଖିଲି ଜୀବନ ଧାରା
ବାଳୁତ ପିଲା ମୋ କାନ୍ଦେ ଦେଖି ମୋତେ
ବୁହାଇ ଲୋତକ ସାରା ।।

ବୁଝେନା ସେ କିଛି କବିତା ମହିମା
ହାତଠାରି କହେ କଥା
ଆଖିରେ ତାହାର ଜୀବନ୍ତ କବିତା
ତା ଆଗେ ବୃଥା ମୋ ଲେଖା ।।

ଫିଙ୍ଗି ଦେଲି ଯେତେ କାଳି କଲମକୁ
କୋଳେଇ ନେଲି ମୁଁ ତାକୁ
ଶିରା ଧମନୀରେ ଖେଳିଗଲା ପ୍ରେମ
ଦେଖି ମୁଖ ଚନ୍ଦ୍ରମାକୁ ।।

ସ୍ୱର୍ଣ୍ଣ ପକ୍ଷୀ ଯେତେ, ଯେତେ ନଉ ଫୁଲ
ଲେଖିଥିଲି ଭାବନାରେ
ପ୍ରେମ ବିଭୋରରେ ସର୍ବେ ଉଡ଼ି ଗଲେ
ସ୍ୱପ୍ନ ଛାଡ଼ି ସତ୍ୟତାରେ ।।

(ମଞ୍ଜୁବାଳା କବି)
ଓଁ ଶାନ୍ତିଃ

# ଆଗତ ବରଷ - ୨୦୧୭

ବିଦାୟ ବିରସ ନିରସ ଚାନ୍ଦିନୀ,
ଆଗତ ସରସ ନିର୍ମଳ ଚାନ୍ଦିନୀ,
ଉଲ୍ଲସିତ ନବ ବରଷେ ମେଦିନୀ ;
ମାନସ ତଳପେ ଆଶା ଉନ୍ମାଦିନୀ ||-୧

ଚଞ୍ଚଳ  ବିହ୍ୱଳ ଆକୁଳିତ ମନ;
ବିମଳ ଶ୍ୟାମଳ ପ୍ରାଙ୍ଗଣ କାନନ;
ନୂତନ କିରଣେ ଅଲୋକିତ ବନ;
ନବ ବର୍ଷେ ନବ ଆଶା ସଞ୍ଚରଣ ||-୨

ନବୀନ କୁସୁମ ପୁଲକ ସଞ୍ଚାରି
ମହକି ଆକର୍ଷେ  ନବୀନ ଚଞ୍ଚରୀ;
ନବ ବର୍ଷେ ନବ ଆଶା ଅସୁମାରୀ;
ତନୁ-ମନେ ଜାଗେ ଆନନ୍ଦ ଲହରୀ ||-୩

ମଞ୍ଜୁବାଳ କବି  ୨୮ ଡି. ୨୦୧୬

# ଆସ ମୋର ସାଥୀ



ବିନା ସାଧନର ଗାଉଛି ମୁଁ ଆଜି
ବେସୁରା ରାଗିଣୀ ଗୀତ
ବିନା ନାଉରୀରେ ନାବ ଯାଏ ଭାସି
ପ୍ରଖର ଉଜାଣି ସ୍ରୋତ |-୧

ମଉଳା ଭାବନା- ଫୁଲ ମୁଁ ଗୁନ୍ଥିଲି
ସୂତା କଲି ଅଶ୍ରୁଧାରା
ଆଶା-ଯମୁନାରେ ସ୍ନାନ କରି କ୍ଳାନ୍ତ,
ମାଗେ ଚିରନ୍ତନ ନିଦ୍ରା |-୨

ନାହିଁ ଆଜି ଦିନ, ଅନ୍ଧକାର ରାତି,
ନାହିଁ ସଞ୍ଜ କି ସକାଳ
ଅତୀତ, ଭବିଷ୍ୟ ଆଉ ବର୍ତ୍ତମାନ –
ସବୁ ଅଟେ ଏକାକାର |-୩

ନାଟକ ମୋହର ସରି ସରି ଯାଏ,
ନାହିଁ ଆଉ ବର୍ତ୍ତାଳାପ
ଶୂନ୍ୟ ଅଭିସାରେ ମିଥ୍ୟା ରଙ୍ଗମଞ୍ଚେ
ଶୁଣେ ମୋ ନିଜ ସଂଳାପ |-୪

ନୁହେଁ ମୁଁ ଜୀବିତ ଅବା ନୁହେଁ ମୃତ,
ଖାଲି ଏକ ଶୂନ୍ୟସ୍ଥାନ,
ନାହିଁ କିଛି ଦୃଶ୍ୟ, ନା କେହି ଦର୍ଶକ,
ସତ୍ୟ ଭରା ମହାଶୂନ୍ୟ |-୫

ମୋ ଜୀବନ ପତି ଆସ ହୋଇ ସାଥୀ
ଚେତନାର ଦୀପ ଜାଳି,
ଏ ଅମା ଅନ୍ଧାରେ ଭବ ପାରାବାରେ
ନାବ ମୋର କର ପାରି |-୬

ଫେରିଯିବି ତୁମ ସୀମନ୍ତିନୀ ସାଜି
ତାରକା ପୁଞ୍ଜ ମେଳେ,
ଅଳଙ୍କାର ସାଜେ ବିଦାୟ କରିବ
ପ୍ରକୃତି ତା ଅଶ୍ରୁଜଳେ |-୭

ଓଁ ଶାନ୍ତିଃ ଧ୍ୟାନୀ ସାଦ୍ଧ୍ୱି (ମଞ୍ଜୁବାଳା କବି)

# ଅଭୀପ୍ସା

କରେ କର ଧରି ନିଅ ମୋତେ ତୋଳି
ସମୟ ହେଉଛି ଗତ
ଭରି ଦିଅ ମୋତେ ପ୍ରେମର ସୁବାସେ
ପରାଣ ହେଉ ମୋ ସିକ୍ତ |-୧

ମଧୁର ମିଳନ ସମୟ ଆସିଛି
ଫଗୁଣର ଫଗୁ ଧରି
କର୍ଣ୍ଣରେ ବାଜୁଛି ଅନାହତ ନାଦ
ପିତ୍ରାଳୟ ଯିବି ଫେରି |-୨



ଆଶା ଥିଲା ମୋର ସମାଧି ପର୍ଯ୍ୟନ୍ତ
ଯିବି ତୁମ ହାତ ଧରି
ହେବ ନାହିଁ ଆଉ ସେ ଆଶା ପୂରଣ
ସମୟର ହାତେ ଡୋରି |-୩

ଜାଣିଛି ମୁଁ ଅଜ୍ଞ ଖୋଜି ପାରିବିନି
ବିଶାଳ ଏ ବ୍ରହ୍ମାଣ୍ଡରେ
ସୂକ୍ଷ୍ମ ଶରୀରେ କେମିତି ଖୋଜନ୍ତି
କହି ଦିଅ କେହି ଥରେ |-୪

ଓଁ ଶାନ୍ତିଃ ମଞ୍ଜୁବାଳା କବି (ଧ୍ୟାନୀ ସାଧ୍ବି)

# ଅଭିଳାଷା

ରତି ରତି ରାତି          ଗଲାଣି ତ ବିତି
ଆସ ଆ ଗୋ ମୋର ସାଥୀ |
କିଛି କୁହ କଥା          ଶୁଣ କିଛି ବ୍ୟଥା
ଯାଉ ବିଜନତା ବିତି ||-୧-||

ଅଳପ ଅଳପ          ସପନ ଅଳୀକ
ଢାଳି ଦିଅ ଗୋ ନୟନେ |
କ୍ଷଣିକ ହେଲେ ବି          ରମ୍ୟା ରାତ୍ରି-ଛବି
ଆଙ୍କି ଦିଅ ମୋର ପ୍ରାଣେ ||-୨-||

ପ୍ରତୀକ୍ଷା ଅଧିର          କଲେ ବି ମଧୁର
ତୁମ ପ୍ରେମମୟ କୋଳେ |
ଚାନ୍ଦ ତାରା ମେଳେ          ମୋ ଶ୍ୱାସ ମାଳାରେ
ତୁମ ଆରାଧନା କରେ ||-୩-||

ମୁଁ ଅଭିସାରିଣୀ,          ସାକ୍ଷୀ ଏ ରଜନୀ
ଦେଖିଲାଣି ଯୁଗାନ୍ତର |
ଏ ରାତିରେ ହେଉ          ମୋ ଜୀବନ ଶେଷ-
ମିଳନର ଅଭିସାର ||-୪-||

ଅନନ୍ତ ଯୁଗର          ଏହି ସୃଷ୍ଟିଚକ୍ରେ
ଆମ ମିଳନର ଚିହ୍ନ:
ହେବ ତାହା ଲୁପ୍ତ,          କି ଅବା ବିଲୁପ୍ତ,
ଅସୀମ ଅସ୍ତିତ୍ୱେ ଲୀନ ! -୫-||

ତେଣୁ ଆଗୋ ସାଥୀ          ନିଅ ନା ବିରତି
ଚନ୍ଦ୍ରମା ଯାଉଛି ଅସ୍ତ |
ବିରାଟ ସତ୍ତାରେ          ମିଶିବା ଆଗରୁ
ଥରେ କର କୋଳାଗ୍ରତ ||-୬-||

ମଞ୍ଜୁବାଳା କବି
ଜୁନ ୨୦୧୬

# ଅଧା ଲେଖା ପ୍ରେମ ପତ୍ର

ସତେ କି ବା ମୋର    କର୍ମର ସଂସ୍କାର
ଯେତେ ଥିଲା ଜୀବନର |
ପାଣି ସୁଅ ପରି ଆସିଲେ ଭଉଁରି
ଅଧାରେ ରହିଲା    ଅଧା ଲେଖା ମୋର
ଜୀବନର ପ୍ରେମ ପତ୍ର ||    -୧-||

ବୁଡ଼ିଲି କର୍ମରେ    ବିଚାରି ମନରେ
ଶେଷ ହେବ ଏ ଜଞ୍ଜାଳ;
ଶିଙ୍ଗାର କରିବି, ଆନନ୍ଦେ ରହିବି
ପୂର୍ଣ୍ଣ ହେବ ମୋର    ଏହି ମର୍ତ୍ତ୍ୟପୁରେ
ଅଭିଳାଷ ଜୀବନର ||    -୨-||

ବିଧିର ବିଚାର    ବିରାଟ ବିଚିତ୍ର,
ପାରିଲିନି କିଛି ବୁଝି |
କେମିତି ଆସିଲା ଅଦିନେ ପ୍ରଳୟ
ପତ୍ର ଗଲା ହଜି    ଆଜି ବି ପାଇନି
ସେହି ପ୍ରେମ ପତ୍ର ଖୋଜି ||    -୩-||

ଥମି ଗଲା ଯେତେ    ଝଡ଼ ଝଞ୍ଜା ସ୍ରୋତ
ସ୍ତବ୍ଧ ନୀରବ ନିଶ୍ଚଳ |
ଶୂନ୍ୟ ହେଲା କର୍ମ ଲୁଟି ଗଲା ମନ
ଥମିନି ଏ ଯାଏ    ବିରହ ବେଦନା,
ବହୁଛି ନୟନୁ ନୀର ||    -୪-||

ଖସିଲା ଆକାଶ    ଫାଟିଲା ପୃଥିବୀ
ହଜିଗଲା କାୟା ମୋର |
ଚତୁର୍ଦ୍ଦିଗ ଶୂନ୍ୟ, ନିଶ୍ଚଳ ମଉନ
ରହି ଗଲା ଖାଲି    ଧମନୀରେ ପାଣି,
ହୃଦ-ଗ୍ରନ୍ଥି ହାହାକାର ||    -୫-||

ମରନ୍ତେ ମୋ ଆଶା    ଏକ ଇ ଭରସା
ଭରି ଅନ୍ତର-ଗହ୍ୱର |
ସେହି ଏକା ମୋତେ    କହେ ଅବିରତେ
ପୋଛି ଦେ ଆଖିରୁ ନୀର |
ମୋ ସାଥୀରେ ଆସି    ଯାଆ ରେ ତୁ ମିଶି,
ମୁଁ ସେହି ପ୍ରେମ ସାଗର ||    -୬-||

ମଞ୍ଜୁବାଳା କବି
୨୧-୦୫-୨୦୧୬

# ଅହଂକାର ନାହିଁ

ଦେଖ ପ୍ରିୟା ଅହଂକାର ନାହିଁ ଜମା ମୋର
ଧାର ଧାରେ ନାହିଁ ଜମା ମୁଁ କଳି ଝଗଡାର

ସାଙ୍ଗମାନେ  କହନ୍ତି- ମୁଁ କାଳେ ହିରୋ
ସବୁବେଳେ କରୁଥାଏ ପର ଉପକାର

ଟଙ୍କା ପଇସା ବି ଅମାପ ମୋହର
ପ୍ରିୟତମ ସାଙ୍ଗ ମୁଁ- ସଭି ସାଥୀଙ୍କର
ଦେଖ ପ୍ରିୟେ ଅହଂକାର ନାହିଁ ଜମା ମୋର |୧

ମୋ ପାଶେ ଭରପୁର ଜ୍ଞାନର ଭଣ୍ଡାର
ଚୁଟୁକିରେ ସମାଧାନ କରେ ସମସ୍ୟାର

ଉପରେ ପଡେନାହିଁ, କି ଦିଏନା ଉତ୍ତର
ଦେଇ ଦିଏ ସବୁକିଛି ଲୋଭ ନାହିଁ ମୋର
ଦେଖ ପ୍ରିୟେ ଅହଂକାର ନାହିଁ ଜମା ମୋର |୨

ଏହା ଶୁଣି ପ୍ରିୟେ ଭାଷିଲେ...
ଶୁଣିଲି ସବୁ_ ତୁମର ନାହିଁ ଅହଂକାର

ଗର୍ବନାହିଁ କହୁଅଛ କେତେ ବାରମ୍ବାର
ଗନ୍ତାଘର ତୁମେ ମହା ଅହଂକାର ର

ଦେଖ ପ୍ରିୟ- ଦେଖାଅନି
ଆଉ ମୁଖ ବାରମ୍ବାର |୩

ମଞ୍ଜୁବାଳା କବି.ଓଁ ଶାନ୍ତିଃ

# ଅଜଣା ପ୍ରେମିକ

କାଳିମା ଉଆଁସେ ଯେବେ
ଦିଶିବ ଚାନ୍ଦିନୀ
ମରୁଦ୍ୟାନେ ସୁବାସିବ
ନିଶିଗନ୍ଧା ରାଣୀ
ଋତୁଚକ୍ର ରହି ସଦା
ମଧୁମାସ ବୋଲି
ରଙ୍ଗାଇବ କୃଷ୍ଣଚୂଡ଼ା
ନୃତ୍ୟେ ଚଇତାଳି;

ତେବେ ତ ଆସିବ କିଏ ଅଦେଖା ପ୍ରେମିକ
ନେବ ପଥେ ଧରି ହାତ ସାଜି ସେ ପଥିକ |୧

ସାଗରର ଛବି ଯେବେ
ଦିଶିବ ଅମ୍ବରେ
ଧରା ଛାଇ ଦେଖାଯିବ
ସ୍ୱଚ୍ଛ ଚନ୍ଦ୍ରମାରେ
ନିଶୀଥରେ ଆଳାପିବେ
ନକ୍ଷତ୍ର ଅମାଳ
ଧରାଦେବେ ହାଥେ ଆସି
ଗିରିଶୃଙ୍ଗ ମାଳ;

ତେବେ ତ କିଏ ନିଶ୍ଚେ ଅଜଣା ପ୍ରେମିକ
ନେଇଯିବ ଅଜଣାରେ ସାଜି ସେ ନାବିକ |୨

ତରୁଗଣ ଉଭାସିବେ
ଯେବେ ଧ୍ୟାନୀ ପରି
ସୁବାସ ପୁଷ୍ପ ଉଡିବେ
ମଧୁପକୁ ଭାଳି
ଦ୍ୟୁଲୋକ- ଭୂଲୋକ ଯେବେ
ମିଶିଯିବେ ପାଶେ
ପାଦ ଧରାରେ, ମସ୍ତକ
ଛୁଇଁବ ଆକାଶେ;

ତେବେ ତ କିଏ ନିଶ୍ଚେ ଅଜଣା ପ୍ରେମିକ
ନେଇଯିବ ହାତ ଧରି ସଜି ନିରୀକ୍ଷକ |୩

ମଞ୍ଜୁବାଳା କବି. ଓଁ ଶାନ୍ତିଃ

# ଅଜଣା ପ୍ରେମିକ

କାଳିମା ଉଆଁସେ ଯେବେ
ଦିଶିବ ଚାନ୍ଦିନୀ
ମରୁଦ୍ୟାନେ ସୁବାସିବ
ନିଶିଗନ୍ଧା ରାଣୀ
ଋତୁଚକ୍ର ରହି ସଦା
ମଧୁମାସ ବୋଲି
ରଙ୍ଗାଇବ କୃଷ୍ଣଚୂଡ଼ା
ନୃତ୍ୟେ ଚଇତାଳି;

ତେବେ ତ ଆସିବ କିଏ ଅଦେଖା ପ୍ରେମିକ
ନେବ ପଥେ ଧରି ହାତ ସାଜି ସେ ପଥିକ |୧

ସାଗରର ଛବି ଯେବେ
ଦିଶିବ ଅମ୍ବରେ
ଧରା ଛାଇ ଦେଖାଯିବ
ସ୍ୱଚ୍ଛ ଚନ୍ଦ୍ରମାରେ
ନିଶୀଥରେ ଆଳାପିବେ
ନକ୍ଷତ୍ର ଅମାଳ
ଧରାଦେବେ ହାଥେ ଆସି
ଗିରିଶୃଙ୍ଗ ମାଳ;

ତେବେ ତ କିଏ ନିଶ୍ଚେ ଅଜଣା ପ୍ରେମିକ
ନେଇଯିବ ଅଜଣାରେ ସାଜି ସେ ନାବିକ |୨

ତରୁଗଣ ଉଭାସିବେ
ଯେବେ ଧ୍ୟାନୀ ପରି
ସୁବାସ ପୁଷ୍ପ ଉଡିବେ
ମଧୁପକୁ ଭାଳି
ଦ୍ୟୁଲୋକ- ଭୁଲୋକ ଯେବେ
ମିଶିଯିବେ ପାଶେ
ପାଦ ଧରାରେ, ମସ୍ତକ
ଛୁଇଁବ ଆକାଶେ;

ତେବେ ତ କିଏ ନିଶ୍ଚେ ଅଜଣା ପ୍ରେମିକ
ନେଇଯିବ ହାତ ଧରି ସଜି ନିରୀକ୍ଷକ |୩

ମଞ୍ଜୁବାଳା କବି. ଓଁ ଶାନ୍ତିଃ

# ଅଜଣା ପ୍ରେମିକ

କାଳିମା ଉଆଁସେ ଯେବେ
ଦିଶିବ ଚାନ୍ଦିନୀ
ମରୁଦ୍ୟାନେ ସୁବାସିବ
ନିଶିଗନ୍ଧା ରାଣୀ
ଋତୁଚକ୍ର ରହି ସଦା
ମଧୁମାସ ବୋଲି
ରଙ୍ଗାଇବ କୃଷ୍ଣଚୂଡ଼ା
ନୃତ୍ୟେ ଚଇତାଳି;

ତେବେ ତ ଆସିବ କିଏ ଅଦେଖା ପ୍ରେମିକ
ନେବ ପଥେ ଧରି ହାତ ସାଜି ସେ ପଥିକ |୧

ସାଗରର ଛବି ଯେବେ
ଦିଶିବ ଅମ୍ବରେ
ଧରା ଛାଇ ଦେଖାଯିବ
ସ୍ୱଚ୍ଛ ଚନ୍ଦ୍ରମାରେ
ନିଶୀଥରେ ଆଳାପିବେ
ନକ୍ଷତ୍ର ଅମାଳ
ଧରାଦେବେ ହାଥେ ଆସି
ଗିରିଶୃଙ୍ଗ ମାଳ;

ତେବେ ତ କିଏ ନିଶ୍ଚେ ଅଜଣା ପ୍ରେମିକ
ନେଇଯିବ ଅଜଣାରେ ସାଜି ସେ ନାବିକ |୨

ତରୁଗଣ ଉଭାସିବେ
ଯେବେ ଧ୍ୟାନୀ ପରି
ସୁବାସ ପୁଷ୍ପ ଉଡିବେ
ମଧୁପକୁ ଭାଳି
ଦ୍ୟୁଲୋକ- ଭୂଲୋକ ଯେବେ
ମିଶିଯିବେ ପାଶେ
ପାଦ ଧରାରେ, ମସ୍ତକ
ଛୁଇଁବ ଆକାଶେ;

ତେବେ ତ କିଏ ନିଶ୍ଚେ ଅଜଣା ପ୍ରେମିକ
ନେଇଯିବ ହାତ ଧରି ସଜି ନିରୀକ୍ଷକ |୩

ମଞ୍ଜୁବାଳା କବି. ଓଁ ଶାନ୍ତିଃ

# ଅଳସ ରାତି

ହେ ମୋର ଶାନ୍ତ ଶୀତଳ ସ୍ନିଗ୍ଧ ସରଳ ରାତ୍ରି!
ଲୁଚି ଲୁଚି ଆସ ହୋଇ ମୋର ସହଯାତ୍ରୀ |-୧

ମନରେ ଜଗାଇ ଅମୃତ ସରସ
ଭରିଦିଅ ନିତି ଶୃଙ୍ଗାର ରସ
ସ୍ୱର୍ଗୀୟ ଚେତନା ଭରା ଜାଗରଣ
ଖେଳାଇ ମୋ ମନେ ଶାଶ୍ୱତ ସ୍ୱପ୍ନ
ଉଠେ ଯେବେ ମୁହିଁ ଅଳସ ନିଦ୍ରା ତେଜି
ଫେରି ଯାଅ ତୁମେ ନିଃଶବଦ ପଥେ
ଥାଏ ମୁଁ ତୁମଠି ହଜି | -୨

ଆମ୍ରକୂଟରେ କୋକିଳର ତାନ
ମନ୍ଦିରରେ ଶୁଭେ ପୂଜା ଅର୍ଚ୍ଚନ
କିନ୍ତୁ - ପାରେ ନାହିଁ ମୁଁ ଯେ ଚାହିଁ |
ରାତ୍ରି ଗୋ ତୁମ ଚୋରା ପୀରତିରେ
ଏବେ ବି ଶୋଇଛି ଅମୃତର ରସ ଛୁଇଁ | -୩

ସନ୍ଦେହୀ ସୂରୁଯ ପଚାରଇ ମୋତେ -
କୁହ ଆଗୋ ସଖି! କିଏ ଥିଲା ସାଥେ?
ମୁଁ ଦିଏ ଉତ୍ତର -
ହେ ସପ୍ତ ରଙ୍ଗର ଆଧାର
ହୁଅ ନାହିଁ ଅଧୀର,
ରାତ୍ରୀ ଯେ ସିଏ: ନେଇ ତୁମ ରଙ୍ଗ
ମୋ ଦେହରେ ଆଙ୍କି ଶତ ଶତ ରଙ୍ଗ
ନିଏ ନାହିଁ କିଛି, ନିଜେ କୃଷ୍ଣ ରଙ୍ଗ,
ଯାଏ ଧୀରେ ଅପସରି |
ନ ଗଲେ ରାତ୍ରୀ ତୁମେ କି ଆସିବ
ବଳୟ ବିସ୍ତାରି, ଜୀବନ ପ୍ରସାରି
ଜ୍ଞାନର ସେହି ଦିବ୍ୟ ଆଲୋକ ଧରି? -୪

ଓଁ ଶାନ୍ତିଃ ମଞ୍ଜୁବାଳା କବି (ଧ୍ୟାନୀ ସାଭ୍ୱି)

# ଅନିତ୍ୟତା

ନିତି ନିତି ତାରା ଫୁଲ ଅନ୍ତରୀକ୍ଷ କୋଳେ,
ପୁଣି ନିତି ଲୁଚି ଯା'ନ୍ତି କାଳର କବଳେ |-୧-

ଅସୁମାରୀ ଫୁଲ ପୁଣି ବନେ ଉପବନେ,
ବୃନ୍ତଚ୍ୟୁତ ହୋଇ ନିତି ଲୋଟନ୍ତି ଭୁବନେ |-୨

ପାରାବାରେ ଖେଳେ ନିତି ତରଙ୍ଗର ମାଳ,
କ୍ଷଣକୁ ଉହ୍ଲିତ ପୁଣି କ୍ଷଣେ ପୂରେ କାଳ |୩-

ଧ୍ୟାନୀ ସମ ସ୍ଥିତ ଯେତେ ବନସ୍ପତି କୁଳ,
ପ୍ରତି ବର୍ଷ କିଏ ଲୁଟେ ତାଙ୍କ ପତ୍ର ଫୁଲ ?-୪-

କେବେ କାଳେ ଇନ୍ଦ୍ରଧନୁ ବିଞ୍ଚି ସାତ ରଙ୍ଗ
କିମ୍ପାଁ ଲୁଚି ଯାଏ ଶୂନ୍ୟେ ରଙ୍ଗ କରି ଭଙ୍ଗ ?-୫-

କ୍ଷଣକରେ ଅସୁମାରୀ ପତଙ୍ଗ ଜନମି,
ଦିନକେ ଲେଖନ୍ତି ନିଜ ସଂକ୍ଷିପ୍ତ ଜୀବନୀ |-୬-

ସୁଖ-ଦୁଃଖ ପ୍ରେମ-ଘୃଣା ଏକ ପରେ ଏକ,
ଲହଡ଼ି ସମ ଉତ୍ଥାନ-ପତନ ଅନେକ |-୭-

ଜନ୍ମ ମରଣ ମିଳନ ବିଚ୍ଛେଦ ଏପରି,
ସ୍ରୋତ ସମ ଧାଉଁଥାନ୍ତି ଭାଗ୍ୟ ଅନୁସରି |-୮-

ମହାସ୍ରୋତେ ଜୀବାତ୍ମାଙ୍କ ଗତି ଏହି ପରି,
ଯୁଗ ଯୁଗ ଉତ୍ତରନ୍ତି ଗୁଣ କର୍ମ ଧରି |-୯-

ଏକ ସେହି ମହାନନ୍ଦ ସବୁଠାରୁ ଭିନ୍ନ,
ଏକରସେ ଚାଲେ ତା'ର ଧାରା ଅବିଚ୍ଛିନ୍ନ |-୧୦-

ମଞ୍ଜୁବାଳା କବି ୦୭-ଜୁନ-୨୦୧୬

# ଅନ୍ତର୍ଜାଲ [ନେଟ] ର ମହିମା

"ବସୁଧୈବ କୁଟୁମ୍ବକମ୍" ର ମହିମା
ଇଣ୍ଟରନେଟ୍ ବଢାଇଛି ତାହାର ଗାରିମା |-୧

ଉଦଘୋଷିତ ବାକ୍ୟ ଆଜି ହୋଇଛି ସଫଳ
ଫେସ୍ ବୁକ୍ ରେ ସଭିଏଁ ହୋଇଛନ୍ତି ଠୁଳ |-୨

ଏକ ପରିବାର ପରି ସଭିଏଁ ଚଳନ୍ତି
କି ବୋର୍ଡ ଧରି ସର୍ବେ କର୍ମ କରିଯାନ୍ତି |-୩

ସମସ୍ତେ ସମସ୍ତଙ୍କୁ ଏଠି ପ୍ରଶଂସା କରନ୍ତି
ସବୁ ମହାଦାନୀ ହୋଇ ପ୍ରେମକୁ ଛୁଟାନ୍ତି |-୪

ଭିଡଭାଡ ନାହିଁ କିଛି ରୋଷେଇଶାଳରେ
ସୁସ୍ୱାଦୁ ଖାଦ୍ୟ ପିକ୍ ଦିଶେ ଟାଇମ୍ ଲାଇନ୍ ରେ |-୫

ପୂଜାପାଠରେ ଆଜି ଦେବତା ବିଭୋର
ଭକ୍ତ ଲଗେଇ ଚାଲନ୍ତି ପ୍ରୋଫାଇଲ୍ ରେ ଚିତ୍ର | -୬

କିନ୍ତୁ! ଛୋଟପିଲା ଆଜି ସବୁ  ବେସହାରା
ପିତା ମାତା ଅଜା ଆଈ ସବୁ ନେଟ୍ ପ୍ୟାରା | -୭

ପ୍ରୋଫାଇଲ ରେ ଫଟୋ ଦେବାର ଉଦ୍ଦେଶେ
ପିଲାଏ ଯା'ନ୍ତି କପଟୀ ବାପା ମାଆ ସାଥେ | -୮

ଘରେ ପହଞ୍ଚି ପିଲାଙ୍କ ତୁଟିଯାଏ ଆଶା
ଫଟୋ ଅପଲୋଡ୍ କରନ୍ତି ବସି ପିତାମାତା | -୯

ବିଶ୍ୱାସ ହରାନ୍ତି ପିଲା, ତୁଟେ ତାଙ୍କ ଆଶା,
ଦେଖି ମାଆ-ବାପାଙ୍କର ଫେସବୁକ୍ ନିଶା |-୧୦

କୁଟୁମ୍ବରୁ ଧୀରେ ପିଲେ ଅପସରି ଯାନ୍ତି,
ବଡ ହେଲେ ସେ ବି ଅନ୍ତର୍ଜାଲରେ ବସନ୍ତି |-୧୧

*ଧାନୀ ସାକ୍ଷି* *(ମଞ୍ଜୁବାଳା କର୍ବି)*
*ଓଁ ଶାନ୍ତିଃ* 21-10-2014

# ଅନ୍ତର୍ଜାଲ [ଇଣ୍ଟର୍ନେଟ୍]ର ମହିମା -୩

ଅନ୍ତର୍ଜାଲ ଚାଲେ ଆଜି ଅନ୍ତରେ ଅନ୍ତରେ,
ମନ୍ତ୍ରମୁଗ୍ଧ କରେ ସର୍ବେ ପ୍ରାନ୍ତରେ ପ୍ରାନ୍ତରେ |1

ବାଳୁତରୁ ବୃଦ୍ଧ ଯାଏ ପାଗଳ ପ୍ରମାଣେ,
ପ୍ରେମ ଭରେ ଖୋଜେ କିଛି କୋଣେ ଅନୁକୋଣେ | 2

କେଉଁଠାରୁ ଆସିଲା ପସନ୍ଦ [LIKE] କି ବ୍ୟାଖ୍ୟାନ [COMMENT],
ପ୍ରୀତିସ୍ପର୍ଶେ ପ୍ରତ୍ୟୁତ୍ତର [REPLY] କରନ୍ତି ପ୍ରେରଣ | 3

ଇନ୍ଦ୍ରିୟଗଣ ଏଠାରେ ସଦା କ୍ରିୟାଶୀଳ,
ତନ୍ଦ୍ରାହୀନ ନିଦ୍ରାହୀନ ସର୍ବଦା ଚଞ୍ଚଳ | 4

ପ୍ରେମୀ, ଦେଶପ୍ରେମୀ, ଭକ୍ତ, ଦ୍ରଷ୍ଟା ପୁଣି କବି,
ସଭିଙ୍କ ସଙ୍ଗମ ଏଠି, ସର୍ବେ ଅନୁଭବୀ | 5

ପଣ୍ୟଶାଳା ସମ ମିଳେ ଗୁଣ ଆଉ ଜନ,
ବିନା ଅର୍ଥେ କିଣା-ବିକା ପ୍ରତିଷ୍ଠା, ସମ୍ମାନ | 6

ଜଗତ ଭିତରେ ସୃଷ୍ଟ ଏ ନୂଆ ଜଗତ,
ଅନ୍ତର୍ଜାଲ ନାମ ଧରି ଭୁବନେ ବିଖ୍ୟାତ | 7



ଅଜା, ଆଈ, ବାପା, ମାଆ, ସନ୍ତାନ-ସନ୍ତତି
ସଭିଙ୍କ ହସ୍ତରେ ଅନ୍ତର୍ଜାଲ ଶୋଭା ପା'ନ୍ତି | 8

କୁଟୁମ୍ବ ଭିତରେ ନାହିଁ ଚିଉବିନିମୟ
ଜାଲରେ ଖୋଜନ୍ତି ଚିଠି ଆତୁର ପରାୟ | 9

ସମସ୍ତେ ତ ଗୁଣୀ ଏଠି; ସମାଜରେ କିଏ
ହତ୍ୟା, ଲୁଣ୍ଠନରେ ମାତି ଅରାଜକ ହୁଏ | 10

ପ୍ରେମ କେଉଁପରି ବୋଲି ଦିଅନ୍ତି ବକ୍ତବ୍ୟ,
ଜଗତେ ପାଳିଲେ ତାହା ହୁଅନ୍ତା ନି ସ୍ୱର୍ଗ? 11

"ଆଘ୍ରାଣେ ଅର୍ଦ୍ଧ ଭୋଜନଂ" ଜଗତେ ବିଦିତ;
"ଦର୍ଶନେ ପୂର୍ଣ୍ଣରମଣଂ" ଅନ୍ତର୍ଜାଲେ ଖ୍ୟାତ | 12

କି ଆଉ କହିବି କେତେ ଗୁଣ ଅସୁମାରୀ,
ସମ୍ଭାବ୍ୟ ବିପଦୁଁ ରକ୍ଷା କର ହେ ଶ୍ରୀହରି | 13

**ମଞ୍ଜୁବାଳା କବି     ଓଁ ଶାନ୍ତିଃ**

# ଅନ୍ୱେଷଣ

ବିତିଛି ବିନିଦ୍ର ଗମ୍ଭୀର ରଜନୀ,
ପ୍ରତୀକ୍ଷାରେ ପ୍ରତି କ୍ଷଣ
କେବେ ତୁମେ ସୁପ୍ତ କେବେ ମୁଁ ଜାଗ୍ରତ,
ହୁଏ ନାହିଁ ସମାଗମ |-୧

ଶାରଦୀୟ ଜ୍ୟୋସ୍ନା, ବସନ୍ତ କୁସୁମ,
ବରଷାଧାରାର ରାତି
ପୁଲକିତ ପ୍ରାଣେ କହିଯାନ୍ତି କାନେ –
ଆମ ସାଥେ ଆସ ସାଥୀ |-୨



ଉଜ୍ଜ୍ୱଳ ନକ୍ଷତ୍ର, ଚତୁର୍ଦ୍ଦଶୀ ଚାନ୍ଦ
ପ୍ରତିଭାତ ମହାକାଶେ
କେବେ ତୁମେ ଯାଅ, ଗଲେ ମୁହିଁ ଆସେ
ମିଳନର ଅଭିଳାଷେ |-୩

ବିସ୍ତୃତ ସାଗର, ଅସୀମ ଗଗନ,
ଅପୂର୍ବ ସୁନ୍ଦରୀ ମହୀ
ତୁମେ କେବେ ଅଛ, ଥିଲେ ମୁଁ ନାହିଁ,
କଥା ହୁଏ ନାହିଁ କହି |-୪

କୁଆଁତାରା ପରି ରହିଥାଏ ଜଗି
କହିଯିବି କେତେ କଥା,
ଉଜ୍ଜ୍ୱଳ କିରଣେ ଲୁଚିଯାଏ ମୁହିଁ
ଅନ୍ତରରେ ରଖି ବ୍ୟଥା |-୫

ଅନନ୍ତ ଯୁଗରୁ କେତେ ଯେ ସମୟ
ସବୁ ତ ଯାଇଛି ହଜି,
ମରୀଚିକା ସାଜି ଖେଳ ନାହିଁ ଆଉ,
ନିଜେ ଧରା ଦିଅ ଆଜି |-୬

ଓଁ ଶାନ୍ତିଃ ଧ୍ୟାନୀ ସାଧ୍ୱି (ମଞ୍ଜୁବାଳା କବି)

# ଅପେକ୍ଷା

ସଂସାର ଜଳରେ ଉବୁଟୁବୁ ହୋଇ
ପଡିଲିଣି ମୁହିଁ ଥକି
ଜାଣିବାକୁ ଆଉ ଚାହେଁ ନାହିଁ ତିଳେ
କେତେ ପଥ ଅଛି ବାକି |-୧

କାହିଁ କେତେ ଦୂରେ ଭାସି ଭାସି ଆସି
ମନରେ ପଶିଲା ମୋର
ଆସିବାର ବେଳେ କହିଥିଲ ତୁମେ –
କରିବୁନି ସେଠି ଘର |-୨



କର୍ମ ତୁ କରିବୁ ପଳାଇ ଆସିବୁ
ଛାଡି ପରବାସ ତୋର
ଏଠାରେ ମୁଁ ତୋତେ ଅପେକ୍ଷା କରିଛି
ହାତେ ଧରି ତୋର ଡୋର |-୩

ପଞ୍ଚ ପ୍ରାଣ ଆଜି ଆକୁଳେ ଝୁରୁଛି
ମନେ ପଡେ କଥା ତୋର
ନେଇ ଯାଅ ମୋତେ ଧରି ତୁମ ହାତେ
ଆଉ ବିଳମ୍ବ ନ କର |-୪

***ଓଁ ଶାନ୍ତି*** ଧ୍ୟାନୀ ସାଦ୍ଧି (ମଞ୍ଜୁବାଳା କବି)

# ଅର୍ପଣ

ରୌଦ୍ର ତାପର
ଭୀଷଣ ତାତିରେ
ଯେବେ
କଳାମେଘ ଘୋଟି
କା' ପାଇଁ ଆଶ୍ୱାସି
ଆକାଶକୁ ଫେରି ଯାଏ,
ସେ ସେହି ଅବଳା,
ଉପେକ୍ଷିତା ବାଳା
ଅଶ୍ରୁର ଜଳ
ଚୁପି ଚୁପି ତା'ର
ନୟନୁ ଫେରାଇ ନିଏ |-୧-

ନୀଳାମ୍ବର କୋଳେ
ନକ୍ଷତ୍ରର ମାଳା
ଲଜ୍ଜାରେ ଗମନ
କରନ୍ତି ତତ୍‌କ୍ଷଣ
ଦେଖି ବିଭାତ କିରଣ;
ଯେପରି ରମଣୀ
ପତି-ସୁହାଗିନୀ
ରମ୍ୟା ରଜନୀରେ
ଶୃଙ୍ଗାର ମୁଦ୍ରାରେ
ପ୍ରଣୟୀ ପ୍ରାଣରେ
ନିଜକୁ କରେ ଅର୍ପଣ |-୨-

ଆକାଶର ବାରି
ତଟିନୀ-କୁଆଁରୀ
ସ୍ୱଚ୍ଛ ଜଳ ଧରି
ଯେବେ
ବାଷ୍ପୀଭୂତ ହୋଇ
ଉପରକୁ ଉଡ଼ି ଯାଏ,
ସେ ପରି ଜୀବାତ୍ମା
ଖୋଜି ନିଜ ସତ୍ତା
ଛାଡ଼ି ତା' ଆସକ୍ତି
ଧରି ଜ୍ଞାନ ଭକ୍ତି
ତା' ଉଦ୍‌ଗମେ ମିଶି ଯାଏ |-୩-

ମଞ୍ଜୁବାଳା କବି, ମେଁ ୨୦୧୬

# ଆସ ମୋର ସାଥୀ



ବିନା ସାଧନର ଗାଉଛି ମୁଁ ଆଜି
ବେସୁରା ରାଗିଣୀ ଗୀତ
ବିନା ନାଉରୀରେ ନାବ ଯାଏ ଭାସି
ପ୍ରଖର ଉଜାଣି ସ୍ରୋତ |-୧

ମଉଳା ଭାବନା- ଫୁଲ ମୁଁ ଗୁନ୍ଥିଲି
ସୂତା କଲି ଅଶ୍ରୁଧାରା
ଆଶା-ଯମୁନାରେ ସ୍ନାନ କରି କ୍ଳାନ୍ତ,
ମାଗେ ଚିରନ୍ତନ ନିଦ୍ରା |-୨

ନାହିଁ ଆଜି ଦିନ, ଅନ୍ଧକାର ରାତି,
ନାହିଁ ସଞ୍ଜ କି ସକାଳ
ଅତୀତ, ଭବିଷ୍ୟ ଆଉ ବର୍ତ୍ତମାନ –
ସବୁ ଅଟେ ଏକାକାର |-୩

ନାଟକ ମୋହର ସରି ସରି ଯାଏ,
ନାହିଁ ଆଉ ବର୍ତ୍ତାଳାପ
ଶୂନ୍ୟ ଅଭିସାରେ ମିଥ୍ୟା ରଙ୍ଗମଞ୍ଚେ
ଶୁଣେ ମୋ ନିଜ ସଂଳାପ |-୪

ନୁହେଁ ମୁଁ ଜୀବିତ ଅବା ନୁହେଁ ମୃତ,
ଖାଲି ଏକ ଶୂନ୍ୟସ୍ଥାନ,
ନାହିଁ କିଛି ଦୃଶ୍ୟ, ନା କେହି ଦର୍ଶକ,
ସତ୍ୟ ଭରା ମହାଶୂନ୍ୟ |-୫

ମୋ ଜୀବନ ପତି ଆସ ହୋଇ ସାଥୀ
ଚେତନାର ଦୀପ ଜାଳି,
ଏ ଅମା ଅନ୍ଧାରେ ଭବ ପାରାବାରେ
ନାବ ମୋର କର ପାରି |-୬

ଫେରିଯିବି ତୁମ ସୀମନ୍ତିନୀ ସାଜି
ତାରକା ପୁଞ୍ଜ ମେଳେ,
ଅଳଙ୍କାର ସାଜେ ବିଦାୟ କରିବ
ପ୍ରକୃତି ତା ଅଶ୍ରୁଜଳେ |-୭

ଓଁ ଶାନ୍ତିଃ ଧ୍ୟାନୀ ସାଦ୍ଧ୍ୱି (ମଞ୍ଜୁବାଳା କବି)

# ଅସ୍ତମିତ ସୂର୍ଯ୍ୟ

ସରିଯାଏ ଭାଷା ଭରିଲା ନିରାଶା ଖାଲି ଖାଲି ଏ ପ୍ରାଙ୍ଗଣ |
ବୟସ ବିଗତେ ଅଙ୍ଗ ଜରା-ଗ୍ରସ୍ତେ ଭଙ୍ଗା ଭଙ୍ଗା ଏବେ ମନ ||-୧-

କୋଳାହଳଶୂନ୍ୟ  ଅନ୍ଧକାରାଚ୍ଛନ୍ନ ଭଗ୍ନଗୃହ ଥାଏ ମୌନ |
ଧ୍ୱନି-ପ୍ରତିଧ୍ୱନି କର୍ଣ୍ଣରେ ବାଜେନି ଅବସନ୍ନ ଏ ଜୀବନ ||-୨-

ଶୟନ କକ୍ଷରେ, ରୋଷେଇଶାଳାରେ, ମୃକତାର ବିଭୀଷିକା
ପ୍ରଦୋଷେ ପ୍ରତ୍ୟୁଷେ ଜଳେ ବେଳେ କାଳେ ସ୍ୱର୍ଣ୍ଣମୟୀ ଦୀପଶିଖା ||-୩-

ଯେତେ ପରକାରେ ନାମ-ଯଶଃ କଲେ ସବୁ ଦିନେ ଯିବ ଚାଲି |
ଭୁଲି ଯିବେ ସବୁ ରହି ଯିବ ଆମ ହୃଦୟର ଭାବ ଖାଲି |-୪-

କିଏ ବାପ ଭାଇ ପତି ପତ୍ନୀ ସାଥୀ ଛନ୍ଦାଛନ୍ଦି ସର୍ବେ କର୍ମେ |
ଚଳିଲେ ଜୀବନ କେହି ନୁହେଁ ଆନ ରଖିବେ ମୋତେ ସ୍ମରଣେ ||-୫-

ସୂର୍ଯ୍ୟୋଦୟ ଲଗ୍ନେ ଆସିଲି ଭୁବନେ କର୍ମ ହେଲା ମୋର ପୂର୍ଣ୍ଣ |
ସୂର୍ଯ୍ୟ ଅସ୍ତମିତ ଏ ଶରୀର ଶ୍ରାନ୍ତ, ନିଅ ପ୍ରଭୁ ମୋର ପ୍ରାଣ ||-୬-

ମଞ୍ଜୁବାଳା କବି          ୧୬ ମାର୍ଚ୍ଚ ୨୦୧୬  ଓଁ ଶାନ୍ତିଃ



# ଅତୃପ୍ତ ଫେସବୁକ କବି

ଅତୀତ ତ ମୃତ ହେଲେ ବି ଜୀବିତ କବି ହୃଦୟର ପ୍ରାଣ;

ବର୍ତ୍ତମାନ କିନ୍ତୁ ଜୀବନ୍ତ ହେଲେ ବି ଲାଗେ ପ୍ରସ୍ତର, ନିଷ୍ପ୍ରାଣ |

ଅତୀତରୁ ଝରେ ପରାଗର ରେଣୁ, ମଳୟର ଝରାଫୁଲ

ବର୍ତ୍ତମାନ ଦିଏ ଖାଦ୍ୟ, ବସ୍ତ୍ର ଆଉ ଅଭାବର ସଂସାର |

ଆହେ କବିବୃନ୍ଦ ! କର ନାହିଁ ଆଉ ଅତୀତ-ମିଥ୍ୟା-ଭାଳେଣି;

ଫେରି ଯାଅ ଯିଏ ଯା' ଅତୀତ ପଥେ, ବରଷୁ ମୁକୁତାମଣି |

ପ୍ରେମ ଯଦି ତୁମ ଚିରନ୍ତନ ସତ୍ୟ ରହିଯାଅ ବ୍ରହ୍ମଚାରୀ,

ଓଁକାର ଉଚ୍ଚାରି ଶାଶ୍ୱତେ ବିଚରି ହୁଅ ଜ୍ଞାନ ଅଧିକାରୀ |

ମଞ୍ଜୁବାଳା କବି
୨୧ ଫେବୃୟାରୀ ୨୦୧୬

# ଅବୋଧ କାମନା

ନ ଥାଉ ପଛେ ମୋ ନାମ ଆଦ୍ୟ ବା ପ୍ରାନ୍ତରେ,
ନିଶ୍ଚେ ରହିବି ଆନନ୍ଦେ ମଧ୍ୟ-ବିନ୍ଦୁଠାରେ | ୧

ନ ଥିଲେ ନ ଥାଉ ନାମ ଦିବା କି ରାତ୍ରୀରେ,
ଥିବି ଉଭୟଙ୍କ ଦିବ୍ୟ ସନ୍ଧି ଲଗନରେ | ୨

ଗଙ୍ଗା, ଗୋଦବରୀ ପଛେ ଶୁଖି ଯାଇ ପାରେ,
ମୁଁ ରହିବି ସଦା ସ୍ୱଚ୍ଛ ମାନସରୋବରେ | ୩

ନ ରହୁ ମୋ ସତ୍ତା ନିଦ୍ରା-ସ୍ୱପ୍ନ-ଜାଗରଣେ
ଚତୁର୍ଥାବସ୍ଥାରେ ଥାଏଁ ତୁରୀୟ-ମଗନେ | ୪

ନ ଥାଏ ମୁଁ କାହା ଗୀତ-ନୃତ୍ୟ-ସଂଗୀତରେ
ଥିବି ନିତ୍ୟ ସର୍ବଗତ ଶାଶ୍ୱତ ଓଁକାରେ | ୫

*ଧ୍ୟାନୀ ସାତ୍ତ୍ୱୀ ଓଁ ଶାନ୍ତିଃ ମଞ୍ଜୁବାଳା କବି ୨୦୧୪ ଅଗଷ୍ଟ*



# ବନ୍ଦିନୀ ପ୍ରେମିକା

ଅଳଙ୍କାରେ ତୁମ ଅଳଙ୍କୃତା ମୁଁ
ଉନ୍ମାଦିନୀ ଅଭିସାରିଣୀ |
ଅନାବିଳ ଚିତ୍ତେ ସ୍ମିତ ଅବିରତେ
ମନସ୍ୱିନୀପଥଚାରିଣୀ ||
-୦୧-

ତୁମେ ମୋର ପ୍ରିୟ ପରମପୁରୁଷ
ମୁଁ ତୁମ ନଜରବନ୍ଦିନୀ |
କରି ଆଲମ୍ବନ ତୁମରି ଚେତନ
କାଳ କାଳ ଅନୁଗାମିନୀ ||
-୦୨-

ନିତ୍ୟ ତାଳ ରତେ ନୃତ୍ୟ-ଗୀତ-ମତ୍ତେ
ଆତ୍ମହରା ଉଲ୍ଲାସରେ |
ଯେ ଦେଖିଛି ତୁମ ରୂପ ଅପ୍ରତିମ
ତା' ନୟନ ଖୋଜି ବୁଲେ ||
-୦୩-

ତୃଷାର୍ତ୍ତେ ତଟିନୀ କ୍ଷୀପ୍ର-ପ୍ରବାହିନୀ
ଅଭିଚାରେ ପାରାବାରେ |
ସାଗର ତୃଷାର୍ତ୍ତ ଉଡ଼ି ଉଡ଼ି ଯାଏ
ନୀଳ ଦେଶେ ନଭ ପାରେ ||
-୦୪-

ତୁମେ ଅୟସ୍କାନ୍ତ ମୁଁ ଗୃହୀତା କାନ୍ତା
ବାତୁଳୀ ପରାୟେ ଧାଇଁ |
ସେହି ତୃଷାର୍ତ୍ତକୁ ଖୋଜି ମୁଁ ଚାଲିଛି
ଆକାଶ ପାତାଳ ଡେଇଁ ||
-୦୫-

ଚାନ୍ଦ ଘୂରି ବୁଲେ ପୃଥିବୀ କକ୍ଷରେ
ପୃଥ୍ୱୀ ବୁଲେ ସୂର୍ଯ୍ୟ କକ୍ଷେ |
ତଟିନୀ ସାଗର ସଭିଏଁ ଧାବିତ
ତୁମରି ସାନ୍ନିଧ୍ୟ ଲକ୍ଷ୍ୟେ ||
-୦୬-

ବନ୍ଧନ-ପ୍ରସନ୍ନା ହୋଇ ଆନମନା
ସମର୍ପିତ ଉତ୍ସବରେ |
ନିତ୍ୟ ଚାଲି ଥାଉ ଏହି ଖୋଜା ଖୋଜି
ଏ ବିରାଟ ଅସ୍ତିତ୍ୱରେ ||
-୦୭-

ମୁଁ ତ ଚିର ଅଜ୍ଞ ନିତ୍ୟ କରେ ଯଜ୍ଞ
ତୁମରି ସମିଧ ଧରି |
ନାହିଁ ସମାପନ ସଦା କରେ ଧ୍ୟାନ
ସ୍ୱୀକୃତା ମୁଁ ସହଚରୀ ||
-୦୮-

ମଞ୍ଜୁବାଳା କବି ୨୩-୦୫-୨୦୧୬

## ବରଷିବି ବରଷା ସହିତେ

ନେଇ ଯା ବରଷା ମୋତେ
ସାଥେ ତୋର ଘର,
ବରଷିବି ତୋ ସାଥିରେ
ପର୍ବତ କନ୍ଦର |
-୧-
ଖେଳି ଯିବି ତୋର ସାଥେ
ସାଜି ମୁଁ ବିଜୁଳି,
ଝର ଝର ଝରାଇବି
ଝୁମୁକାର ମାଳି |
-୨-
ଧରି କାଚକେନ୍ଦୁବିନ୍ଦୁ
ଥିଲେ ମୋର ଭାଗ୍ୟେ
ମୁକ୍ତା ହୋଇ ଲୁଚି ଯିବି
ଶାମୁକାର ଗର୍ଭେ |-୩

ରଙ୍ଗବତୀ ସାଧବାଣୀ
ରଙ୍ଗଭୂମି ତଳେ
ପାଟ ରଙ୍ଗେ ରଙ୍ଗି ତନୁ
ଧୀରେ ଧୀରେ ଚଳେ |
-୪-
ଯେମିତି କି ନାଲି ନାଲି
ସିନ୍ଦୂରର ଟୋପା,
ଶ୍ୟାମଳ ପ୍ରାନ୍ତରେ ବଢ଼େ
ଧରଣୀର ଶୋଭା |
-୫-
ପ୍ରତୀକ୍ଷାରେ ତୃଷାତୁର
ଚାତକର ପ୍ରାଣ;
ବରଷିବି ତା'ର ମୁଖେ,
ଲଭିବ ଜୀବନ |
-୬-
ପଲ୍ଲବିତ ହେବେ ତୋରୁ
ବନସ୍ପତି ଲତା,
ବିହରିବେ କାନନରେ
କୁସୁମ କଳିକା |
-୭-

ନିମିଷକେ ଅମ୍ବୁଦରେ
ନିମିଷେ ଧରାରେ,
ତୋର ଅନୁବୃତ୍ତେ ବୁଲି
ବର୍ଷିବି ଧାରାରେ |-୮

ତୋର ବିନ୍ଦୁ ଜଳ ମଧ୍ୟେ
ପ୍ରବେଶି କିରଣ
ହୀରକ ପରାୟେ ଶୋଭେ,
କି ତାର କାରଣ |-୯

ନେଇ ଯା ବରଷା ମୋତେ
ନେଏ ତୋର ସାଥେ,
ବରଷିବା ତାଳେ ତାଳେ,
ଏ ସାରା ଜଗତେ |-୧୦

ମଞ୍ଜୁବାଳା କବି
୧୨-ଜୁଲାଇ-୨୦୧୬

# ଭଜନ



ଡାକୁଛି ମୁଁ ପ୍ରଭୁ ଆଜି ବିପଦ ବେଳାରେ
ଉଦ୍ଧାର କର ଆହେ, ଲୋତକ ମୁଁ ଢାଳେ |
ଘୁଙ୍ଗୁର ରହିଲା ଦୂର,
ସଙ୍ଗୀତ ହେଲାଣି ପର,
ବାଜୁଛି ତୁମର ସୁର,
ବଇଁଶୀର ମଧୁ ସ୍ୱର,
ମିଛମାୟା ସଂସାରରୁ ଉଦ୍ଧାର କର
ଆହେ, ଉଦ୍ଧାର କର...
ଆହେ, ନକରି ପର | -୧
ଡାକୁଛି ମୁଁ ପ୍ରଭୁ....

ପତିତ ମୁଁ ଆଜି ପ୍ରଭୁ ଏ ଭବଜଳରେ
ଉଠାଅ ମୋତେ  ତୁମେ ତୁମରି ନାବରେ;
ସାଗରେ ଲହରୀ ଯେତେ
ବାୟୁରେ ତରଙ୍ଗ ସେତେ,
ନିଃଶ୍ୱାସର ଗତି ଯେତେ
ଧରଣୀର ବାସ ସେତେ,
ଭଲ ପାଏ ତୁମକୁ ମୁଁ, ପାଇନି କାହାକୁ ସେତେ
ପାଇନି କାହାକୁ ସେତେ,
କେ ନାହିଁ ମୋହର ସାଥେ | -୨
ଡକୁଛି ମୁଁ ପ୍ରଭୁ....

ନିଅ ମୋତେ ବୃନ୍ଦାବନ ମିଶେ ତୁମଠାରେ
ତୁମ ପରି କେହି ନାହିଁ ଜଣେ ଏ ସଂସାରେ
ଯମୁନାରେ ପାଣି ଯେତେ
କଦମ୍ବର କଢି ସେତେ
ଗୋପୀଙ୍କ ଶିଙ୍ଗାର ଯେତେ
ସରରେ ଲବଣୀ ସେତେ
ପରାଣ ମୋ ଚାହେଁ ସଦା ରହିବି ତୁମରି ସାଥେ
ରହିବି ତୁମରି ସାଥେ
କେ ନାହିଁ ମୋର ସାଥେ | -୩
ଡାକୁଛି ମୁଁ ପ୍ରଭୁ....

ଓଁ ଶାନ୍ତିଃ ମଞ୍ଜୁବାଳା କବି
(ଧାନୀ ସାଉ)

## ଭସା ବାଦଲ

ମଞ୍ଜୁବଳା କବି ଓଁ ଶାନ୍ତିଃ

ଭସା ବଉଦ ତା ଓଢଣା ର ତଳେ
କେତେ ଚିତ୍ର ଛବି ଆଙ୍କେ
ଗଭୀର ନିଶୀଥେ ନୀଳାକାଶ ଛବି
ଦିଶେ ତାର ଫାଙ୍କ ବାଟେ |୧

ଇନ୍ଦୁରାଣୀ ମୁଖ ଦିଶେ କି ସୁନ୍ଦର
ଚଲା ବାଦଲ ର ପଥେ
ନିମିଷେ ଅରୂପେ ନିମିଷେ ରୂପରେ
ଖେଳେ ଅମ୍ବୁଦର ସାଥେ |୨

ବଉଦ , ଚାନ୍ଦ, ଯେତେ ଗ୍ରହ ପୁଞ୍ଜୀ
ଯେତେ ମିତ ଆକାଶରେ
ଲୁଚି ଲୁଚି ମୌନେ ଅଳାପ କରନ୍ତି
ସୁପ୍ତ ଶାନ୍ତ ନିଶୀଥରେ |୩

# ବିଜନ ରାଗିଣୀ

କାଲି- ଶୁଭିଗଲା କାନେ ଯୋଡ଼ି ମହୁରୀ;
ଅମା-ନିଆ ମନ ବସି ଗଲା ସବାରୀ |
ଆକାଶେ କୁସୁମ ଖସି
ତରା ପଡୁଥିଲେ ଖସି
ଆଜି ମନ-କଇଁ କାନ୍ଦେ, କାନ୍ଦେ ବାହୁନି;
ବାଜୁନି ତା ଦେହେ ଆଉ ନିଶି ଚାନ୍ଦିନୀ ||-୧

କାଲି ରାତି ବିତୁଥିଲା ଚନ୍ଦନ ବନେ;
ସାତ ରଙ୍ଗ ଖେଳୁଥିଲା ସାରା ଗଗନେ |
କାଇଁଚ କାଚର ମାଳି
ଦିଶୁଥିଲା ରୂପ ଝଳି;
ଆଜି ଲାଗି ଗଲା ନିଆଁ କାଆଁଶ ବନେ,
ଲୁହ ଲହୁ ହେଇ ବୋହି ଗଲା ବିଜନେ ||-୨

କାଲି ତମାଳ-ମାଳ ମାଳେ ବସି କୋଇଲି,
ସୁଖେ ଗାଉଥିଲା ରାଗେ ଗୀତି-ମାଧୁରୀ |
ମ ଉସମ ଗଲା ଫେରି
ମନ ହେଇ ଗଲା ଚୋରୀ
ଆଜି ପତ୍ର ଗଲା ଝରି ଉଜୁଡ଼ା ବନ;
ଭାଳି ତା ନୟନୁ ଝରେ ଧାରା ଶ୍ରାବଣ ||-୩

ମଞ୍ଜୁବାଳା କବି ୨୦୧୭୦୧୦୬
ଓମ୍ ଶାନ୍ତିଃ (ଧ୍ୟାନୀ ସାତ୍ତ୍ୱି)

# ବିରତି

କାଲି ଏଠି ପୁଣି ଶୂନ୍ୟେ ଭାସିବ
କେତେ ରଙ୍ଗ କେତେ ଛବି
ଛାଡ଼ି ମୁଁ ଯାଉଛି ମୋହର ଅସ୍ତିତ୍ୱ
ନ ଥିଲେ ବି ଏଠି ଥିବି   |୧

ଯେତେ ବନ୍ଧୁ ମିତ୍ର, ସାଥୀ ଗୁରୁଜନ
ଭଗ୍ନୀ ପୁତ୍ର ସହଚର
ଜାଣିଛି ମୁଁ - କେହି ଭୁଲି ପାରିବନି
ତୁମେ ମୋର ମୁଁ ତୁମର   |୨

ସଂସାରରେ ସଦା ଚାଲିଅଛି ଯିବା-
ଆସିବାର ମହାଖେଳ
କେହି ନୁହେଁ ନିଜ ଅବା ନୁହେଁ ପର
ଆମେ ସର୍ବେ ଏକାକାର   |୩

ପ୍ରେମରୁ  ଉଦ୍ଭବ ପ୍ରେମରେ ହିଁ ସ୍ଥିତ
ପ୍ରେମମୟ ଏ ସଂସାର
ତୁମେ ମୋ ଅନ୍ତରେ,  ମୁଁ ତୁମ ଅନ୍ତରେ
ଅପୂର୍ବ ଏ ସୃଷ୍ଟି ଚକ୍ର  |୪

ମଞ୍ଜୁବାଳା କବି ଓଁଶାନ୍ତିଃ

# ବିଷାଦ ରାଗିଣୀ

କିଏ ଆଜି ବଜାଇଲା ବିଷାଦ ରାଗିଣୀ
ଅଧର ଅଧୀର ହେଲା କମ୍ପିଲା ଧରଣୀ |

ଝରିଲା ନୟନ ଧାରେ
ଅକୁହା ବେଦନା
ବିଳପି ଉଠିଲା ବାଳା
ହୋଇ ଆନମନା |
ଗଗନେ ବିରହୀ ଚାନ୍ଦ
ଜଳେ କୁମୁଦିନୀ
ଝୁରିଲା ଜଳଦକନ୍ୟା
ଜୀମୂତବରଣୀ |

କିଏ ଆଜି ବଜାଇଲା ବିରହ ରାଗିଣୀ...
ଅଧର ଅଧୀର ହେଲା କମ୍ପିଲା ଧରଣୀ -୧-

ଆତୁରେ କା ପ୍ରାଣ ଝୁରେ
ନାହିଁ ପ୍ରଣୟିନୀ
କାତରରେ କାନ୍ଦେ ବନେ
ଚକୋର-ଘରଣୀ |
କୁଆଁ ତାରା ଝୁରେ ଦୂରେ
ଯାଏ ନିଶା ରାଣୀ
ଅଧା ବାଟେ ହଜି କାନ୍ଦେ
କାଳିନ୍ଦୀର ପାଣି |

କିଏ ଆଜି ବଜାଇଲା ବିଧୁରା ରାଗିଣୀ...
ଅଧର ଅଧୀର ହେଲା କମ୍ପିଲା ଧରଣୀ -୨-

କସ୍ତୁରୀ ନ ପାଇ ଖୋଜେ
ବନର ହରିଣୀ
ବୃନ୍ଦାବନ କାନ୍ଦେ ଭାଳି
ହଜିଲା କାହାଣୀ |
କୃଷ୍ଣ ପକ୍ଷେ ଅରଣିକୁ
ଝୁରେ ଇନ୍ଦୁ ରାଣୀ
ନିଶୀଥ ଗଗନ ଝୁରେ
ସୁଦୂର ଧରଣୀ |

କିଏ ଆଜି ବଜାଇଲା ବିଷାଦ ରଗିଣୀ
ଅଧର ଅଧୀର ହେଲା କମ୍ପିଲା ଧରଣୀ | -୩-

ମଞ୍ଜୁବାଳା କବି ୧୯-୭-୨୦୧୬

# ଚେତନ ଜଗତ

ଗୁଣସବୁ ଦେଇ ରଚିଲ ଜଗତ
ନିର୍ଗୁଣର ବାନା ଧରି
ଜୀବନ ଗଢ଼ିଲ ଆକାରେ ସଜାଇ
ନିରାକାର ରୂପ ଧରି |-୧

ରହି ଓତପ୍ରୋତ ମିଶି କର କେଳି
ଜଳେ ସ୍ଥଳେ ନୀଳାମ୍ବରେ
ଅଣୁ ଅଣୁ ଭରା ଚେତନା ପସରା
ସାରା ଏହି ଜଗତରେ |-୨

ଦିବ୍ୟ ଆଲୋକିତ ସୃଷ୍ଟ ଏ ଜଗତ
କିଛି ନାହିଁ ଏକାପରି
ସଭିଏଁ ଅନନ୍ୟ ନିତ୍ୟ ନୂତନ
ଚେତନା ଯାଏ ବିତରି |-୩

ଶୂନ୍ୟସ୍ଥାନ କିଛି ନାହିଁ ଏ ସଂସାରେ
ସଦା ପୂର୍ଣ୍ଣ ବିସ୍ତାରିତ
ସୂକ୍ଷ୍ମ ଅତିସୂକ୍ଷ୍ମ ଅବା ବିରାଟରେ
ସତ୍ତା ତୁମ ପ୍ରତିଷ୍ଠିତ |-୪




କର୍ମ, ଜ୍ଞାନ, ଧ୍ୟାନ, ଇନ୍ଦ୍ରିୟ ଓ ମନ,
ଚିତ୍ତ, ବୁଦ୍ଧି, ଅହଂକାରେ
କେଉଁଠାରେ ତୁମେ ଦିଅ ନାହିଁ ଧରା
"ମୁଁ"ର ଭାବ ଭିତରେ |-୫

"ମୁଁ"ଶୂନ୍ୟ ହୋଇ କର୍ତ୍ତାପଣ ଛାଡି
ସାକ୍ଷୀ ଭାବେ ଯିଏ ଥାଏ
ଜୀବନ୍ତ ସମାଧି କରି ଉପଲବ୍ଧି
ସେହି ଏକା ତୃପ୍ତ ହୁଏ |-୬

ଓଁ ଶାନ୍ତିଃ
ମଞ୍ଜୁବାଳା କବି (ଧ୍ୟାନୀ ସାକ୍ଷି)

# ଛୋଟ ଆଶା

ଏଟା ନୁହେଁ ପ୍ରେମ, ସେଟା ନୁହେଁ ପ୍ରେମ,
କିଛି ମୁଁ ଶୁଣିବି ନାହିଁ;
ଏତିକି ଜାଣିଛି ତୁ' ମୁଁ ସାଥୀ,
ପରିଭାଷା ଏଠି ନାହିଁ ||-୧

ଅଝଟ ଅମନ କିବା ଅଭିମାନ
ନ କରିବା ଯଦି କେହି,
ଖାଲି ସଂସାରରେ ପଥରର ସମ
ରହିଥିବା କି' ବା ଚାହିଁ ?-୨

ଦେବା ନେବା କି ବା କିଛି କିଛି ଆଶା
କଲେ ଯଦି ପ୍ରେମ ଘଟେ,
ତାହା ହେଲେ ପ୍ରେମ ଅତୀବ ଦୁର୍ବଳ,
ଟିକକରେ ଭାଙ୍ଗି ଲୁଟେ |-୩

ଛୋଟ ଛୋଟ ଆଶା କରିଲେ ବି କିଛି
କ୍ଷୁଣ୍ଣ ହୁଏ ନାହିଁ ପ୍ରେମ;
ଈଶ୍ୱର ତ ପୁଣି ଖେଳିବା ଆଶାରେ
କଲେ ସୃଷ୍ଟି ଅନୁପମ !!-୪

ମଞ୍ଜୁବାଳା କବି
୦୪-୦୮-୨୦୧୬

# ଦେବୁନି ଠିକଣା ମୋର

ଉଡ଼ି ଯା ରେ ମିତ ଛାଡ଼ି ମୋର ହାତ
ଆସୁଛି ଅନ୍ଧାର ରାତି
ତୋ ଜୀବନ ସାଥୀ, ବସିଛି ଏକାକୀ
ହୃଦେ ଘେନି ତାର ଭୀତି ||-୧

ମୁଁ ଯେ ଏକାକିନୀ, ଚିର ବିରହିଣୀ,
ଲୁହ ମୋର ଚିର ସାଥୀ;
ମୋ ଭଳି ଚାହେଁନି, ତୋ ପ୍ରାଣସଙ୍ଗିନୀ
ଝୁରୁ ତୋତେ ଦିବା ରାତି ||-୨

ନିତି ପ୍ରଭାତରେ ଆସି ଥରେ ଥରେ
ଦେଖା ଦେଇ ଯିବୁ ମୋତେ;
ମୋ ବିରହ ଗୀତ ଶୁଣାଇବି ମିତ
କାନ୍ଦିବା ହସିବା ସାଥେ ||-୩

ମୋ ଶେଷ ନିଃଶ୍ୱା ଛାଡ଼ି ଯିବ ଯେବେ
କାନ୍ଦିବୁନି ମୋତେ ଝୁରି;
ଦେବୁନି କାହାକୁ ଠିକଣା ମୋହର,
ଚାଲିଯିବୁ ଦୂରେ ଉଡ଼ି ||-୪

ଆଉ କେ ଅବଳା ବିରହିଣୀ ବାଳା
ଢାଳୁଥିଲେ ଅଶ୍ରୁ ବାରି,
ବୁଝାଇ କହିବୁ ସହି ଯିବ ସବୁ
ଛାତିକୁ ପଥର କରି ||-୫

ମଞ୍ଜୁବାଳା କବି ୧୬-୧୨-୨୦୧୬

# ଧରିଲି ଚନ୍ଦ୍ରିକା

ଶରଧାରେ ଧରିଲି ମୁଁ
ଶରଦ ଚନ୍ଦ୍ରିକା
ଭୁଲି ଗଲି କ୍ଷଣିକେ ମୁଁ
ନୁହେଁ ତା ପ୍ରେମିକା |

ଅଙ୍ଗେ ଅଙ୍ଗେ ଖେଳି ଗଲା
ସ୍ନିଗ୍ଧ ସୁଧା ଧାରା
ହଂସ ସମ ବିହରିଲି
ସରୋବର ସାରା |
ଜାହ୍ନବୀ ଛୁଇଁଲା ସତେ
ହୋଇ ଦିଗହରା |
ଅସମୟେ ଇନ୍ଦ୍ରଧନୁ
ଧରଣୀ ଛୁଇଁଲା ||-୧-
ଶରଧାରେ....

ବିମୁଗ୍ଧା କୌମୁଦୀରେ
କରି ଅଙ୍ଗ ସ୍ନାନ
ଅତୃପ୍ତକୁ କରାଇଲି
ସୋମରସ ପାନ |

ବିଭାବରୀ ବୁକେ ସତେ
ଅବତରି ଜହ୍ନ
ଶୀତଳ ପରଶେ ଧରି
ଆଙ୍କିଲେ ଚୁମ୍ବନ ||-୨-
ଶରଧାରେ...

ନ ଥିଲି ତ କେବେ ତାର
ସପନ-ପ୍ରେମିକା
ଫେରାଇଲି ଏଣୁ ତାଙ୍କ
କୁମୁଦ ଚନ୍ଦ୍ରିକା |
କ୍ଷଣିକେ ଖସିଲେ ଯେତେ
ବିଦଗ୍ଧ ତାରକା
ଉଡେଇଲେ ଅଦିନର
ସୁନେଲୀ ବୀଥିକା ||
ଘୋଟି ଗଲା ନିଶାରାଣି
ନିଭିଲା ଚନ୍ଦ୍ରିକା ||-୩-
ଶରଧାରେ...

ମଞ୍ଜୁବାଳା କବି

# ଗୋଧୂଳି

ଗୋଧୂଳି ଲଗନେ ଆଜି କା' ପାଣି ଗ୍ରହଣ;
ଅନମ୍ବରେ ନକ୍ଷତ୍ରଙ୍କ ଝୋଟି ଚିତା ମାନ |-୧-

ଝକ ଝକ ଦିଶୁଅଛି ବିସ୍ତୃତ ଭୁବନ,
କି ବା ଅଳଙ୍କାର ଦେବା, କି ବା ଉପମାନ |-୨-

ଧରଣୀ କୁଆଁରୀ ଦିଶେ ମଙ୍ଗୁଳା କନିଆଁ
ପୀତ ଲୋହିତ କୁସୁମେ ଲାଗେ ନୂଆ ନୂଆ |-୩-

ତା' ଗଭାରେ ସୁଶୋଭିତ ଶ୍ୱେତ ବାସ ଫୁଲ,
ହଳଦୀ ଫୁଲରେ ଧରା ଦିଶେ ମନୋହର |-୪-

ଧଳା ଧଳା ମେଘମାଳ ହାତୀ ଘୋଡ଼ା ସାଜି,
କୁହୁକ ଦେଖାନ୍ତି ନଭେ ମହାନନ୍ଦେ ମଜ୍ଜି |-୫-

ଲୋହିତ ବିମ୍ବରୁ ରଶ୍ମି ମେଘ ମଧ୍ୟେ ଭେଦି
ରୋଶଣି ସମାନ ଝରି ଯାଏ ନଭ ଚୁମ୍ବି |-୬-

ପତଙ୍ଗେ ହର୍ଷିତ ମନେ ଉଡ଼ନ୍ତି ଗଗନେ --
କେଜାଣି ଥିବେ କି ନାହିଁ କାଲି କେ' ଜୀବନେ |-୭-

ପୁରନାରୀ ସନ୍ଧ୍ୟାଦୀପ ଜାଳି ପୁରେ ପୁରେ
କରନ୍ତି ଦେବପୂଜନ ଅନ୍ତର-ଗହ୍ୱରେ |-୮-

ଅନ୍ଧକାର ମଧ୍ୟେ ଉଚ୍ଚ ଓଁକାର ଗୁଞ୍ଜରେ,
ପୁଲକିତ ହୁଏ ପ୍ରାଣ ସେ ଦିବ୍ୟ ମନ୍ତ୍ରରେ |-୯-

ମଞ୍ଜୁବାଳା କବି          ୦୪-ଜୁନ-୨୦୧୬

# ଗୁରୁଙ୍କ ସହ ଯାତ୍ରା

ଗୁରୁ ଆଜି ନେଇ ଯାଅ ପୂର୍ଣ୍ଣମୀ ରାତ୍ରୀରେ
ଛାଡିଯାଅ ନାହିଁ ଆଜି ଏ ପୂର୍ଣ୍ଣ ତିଥିରେ |-1-

ଶିଖାଇଛ ନିଜକୁ ମୁଁ ଭଲ ପାଇବାର
ଅଦମ୍ୟ ସାହସ ଦେଲ ଛୁଇଁଲି ଶିଖର |-2-

ଛାଡ଼ି ଦିଅ ନେଇ ମୋତେ ଦୂର ବଳୟରେ
ନାହିଁ ଡେଣା ଉଡିଯିବି ନୀଳ ଆକାଶରେ |-3-
-

ଖାଲି ନାବେ ରଖି ଦେବ ସାଗର ବୁକୁରେ
ଲହଡ଼ିରେ ଭାସି ଯିବି ବିନା ନାଉରୀରେ |-4-

ରଖି ଦେବ ମୋତେ ନେଇ ପର୍ବତ କନ୍ଦରେ
ସାହାରା ବିନା ଚଢ଼ିବି ଉତ୍ତୁଙ୍ଗ ଶିଖରେ |-5-

ନିଶ୍ଚଳ ଧ୍ୟାନରେ ବସି ସାଥିରେ ତୁମର
ବିନା ନୟନେ ଦେଖିବି ଆଲୋକ ବିସ୍ତାର |-6-

ହରି ନେବ ସବୁ ମୋର କାମନା କ୍ଷଣର
ଶୂନ୍ୟ ହୋଇ ପୂର୍ଣ୍ଣ ହେବ ଅସ୍ତିତ୍ୱ ମୋହର |-7-

ଖୋଲି ଦିଅ ମୋ ଆଗରେ ସ୍ରୋତ ଆଲୋକର
ମିଶି ଯିବି ସେହି ସ୍ରୋତେ ହୋଇ ଏକାକାର |-8-

ଆଶିର୍ବାଦ ଦିଅ ମୋତେ ଗଭୀର ପ୍ରେମର
ବିନା ଇନ୍ଦ୍ରିୟେ ଶୁଣିବି ଅନାହତ ସ୍ୱର |-9-

ପ୍ରେମର ସାଗର ତୁମେ ବୁଡ଼ାଅ ପ୍ରେମରେ
ସମର୍ପିଲି ଅହଂକାର ତୁମରି ପୟରେ |-10-

ମଞ୍ଜୁବାଳା କବି

# ହଜିଲା କବିତା

Dhyanee Saattvi

ପୂର୍ବେ ରଚିଥିଲେ କାବ୍ୟ-କବିତା
କବି ମହାକବି ଯେତେ,
ଗାଉଥିଲେ ତାକୁ ସଙ୍ଗୀତ ରୂପେ
ଅନ୍ତରେ ଉଲ୍ଲାସ ସାଥେ ।

ଉଦାସେ,ହତାଶେ ପଢି ସେ କବିତା,
ଆଲ୍‌ହାଦିତ ହୁଏ ମନ,
ଆଜି ବି ତାଙ୍କର ରଚିତ କବିତା
କରେ ପ୍ରାଣେ ଆଲୋଡନ ।

ଗଭୀର ଭାବରେ ମଜ୍ଜି ଲେଖୁଥିଲେ
ଏକାନ୍ତରେ ଅନ୍ତର୍ମନେ,
ରାଜ ଦରବାରେ ପଥ ପ୍ରାନ୍ତରେ
ଗାଉଥିଲେ ତାହା ମଗ୍ନେ ।

ଜ୍ଞାନି ମୁନି ଜନ ହୃଦୟ କନ୍ଦରେ
ଅନୁଭବ ଯାହା କରେ,
କବି ମହାକବି କଲମ ମୁନରେ
ତାହାକୁ ସଜାଇ ଧରେ ।

ଶୁଣି ସେହି ଗାନ ଜଳୁଥିଲା ଜ୍ୟୋତି
ବରଷୁଥିଲା ଜଳଧାରା,
ବନ ଉପବନ ଉଠୁଥିଲା ହସି
ନାଚି ଉଠୁଥିଲା ଧରା..

ସୃଷ୍ଟି ଓ ସ୍ରଷ୍ଟାଙ୍କୁ ରଖି ଏକ ସ୍ଥାନେ
ଲେଖିଲେ ଯା' ଲେଖନୀରେ,
ସେ କବିତା ଗାଇ ପୁରି ଉଠେ ମନ,
ଏବେ ବି ପୀୟୁଷ ଝରେ ।

ରଙ୍ଗମଞ୍ଚ ଅବା ବିସ୍ତୀର୍ଣ୍ଣ ପ୍ରାନ୍ତରୁ
ସେ କବିତା ଝଙ୍କାର
ପାକଶାଳ ଠାରୁ ନଈପଠା ଯାଏଁ
ଶୁଭୁଥିଲା ବାରମ୍ବାର ।

ଲୁପ୍ତ ଆଜି ସବୁ ତାଙ୍କ ଶବ୍ଦ ଖେଳ
ଶୁଭେ ନାହିଁ ରାଗ ଛନ୍ଦ,
ଉଡିଚି କର୍ପୁର,ପଡିଚି ସେ ବସ୍ତ୍ର,
ହେଲେ ବି ରହିଛି ଗନ୍ଧ ॥




"ଓଁ ଶାନ୍ତି"

# ଜମୁନାର ପାଣି

ସଜାଇ ଦିଅ ଗୋ ଆଜି
ମୋ ମଥା ଓଢଣି,
ଆଣିବି ମୁଁ ଗାଗରରେ
ଜମୁନା ର ପାଣି ।
ଥିବ ସେଠି କୃଷ୍ଣ ଚନ୍ଦ୍ର
ଚତୁର ନାଗର ,
ମୁଖ ଦେଖି ଜାଣି ନେବ
ଭିତିରି ଖବର;
ଢାଙ୍କିଦିଅ ଓଢଣି ରେ
ଚିହ୍ନି ପାରିବନି,
ସଜାଇ ଦିଅ ଗୋ ଆଜି
ମୋ ମଥା ଓଢଣି ।୧

ରଖିଦେବ ଶରୀରକୁ
ଟାଣି ନେବ ମୋତେ,
ନୂଆ ପୁଣି କା' ଘରେ
ଛାଡିବ ତୁରିତେ;
ତାର ଯେତେ ମାୟା ସବୁ
ରଖିଛି ମୁଁ ଜାଣି
ସଜାଇ ଦିଅ ଗୋ ଆଜି
ମୋ ମଥା ଓଢଣି । ୨

ଆଶା ଜମୁନା ର ନଈ
ବହୁଅଛି ସଦା,
ଭରିନେବି ଗାଗରେ ମୋ
ସମ୍ପଦା ବିପଦା;
କରମେ ମୋ ଲେଖା ଯାହା
ଆଣିବି ସେ ପାଣି
ସଜାଇ ଦିଅ ଗୋ ଆଜି
ମୋ ମଥା ଓଢଣି ।୩

ପାହିନି ରଜନୀ ଆଜି
ଦିଅନା ମେଲାଣି,
ଆଣି ବାକୁ ଯିବି ମୁଁ
ଜମୁନାର ପାଣି ।

ମଞ୍ଜୁବାଳା କବି. ଓଁ ଶାନ୍ତିଃ

# ଯାଅନା ଦୂରେ

ଦିବସ ବିରସ ନିଶୀଥ  ନିରସ ସରି ସରି ଆସେ ଶ୍ୱାସ;
ଦିନ ବି ଆସେନା, ରାତି ବି ଯାଏନା, ମୌନ କରେ ପରିହାସ ||-୧

ଭଗ୍ନ ମନ୍ଦିରେ ଦଗ୍ଧ ସଳିତା ଲୁଚି ଧୀରେ ଜଳୁ ଥାଏ;
ଶୂନ୍ୟ ଲଗନ, ନିଃସ୍ୱ ପରାଣ, ଜ୍ୟୋତି ଧୀରେ ଆସୁଥାଏ ||-୨

କେଉଁ ଶ୍ରାବଣର ଝଡ଼ରେ କାନ୍ଥରୁ ଖସି ଗଲା ଛାୟା ଚିତ୍ର;
ସେ ଜାଗାଟି ଆଜି ଶିଉଳିରେ ପୂର୍ଣ୍ଣ, ହାତ ଖସେ ବାରମ୍ବାର ||-୩

ଉଡ଼ିଛି କର୍ପୂର, ରହିଅଛି କନା, ହେଲେ ବି ଅଛି ମହକ;
ଘଟ ଛଡ଼ି ଘାଟ ଦେଖିବାର ବେଳ, ଶୁଣ ପ୍ରିୟ! ମୋର ଡାକ ||-୪

ମଞ୍ଜୁବାଳା କବି ୧୧-୧୨-୨୦୧୬

# ଜୀବନ ପ୍ରଦୀପ

ଲିଭି ଲିଭି ଯାଏ ଜୀବନ ପ୍ରଦୀପ
ଚତୁର୍ଦ୍ଦିଗେ ଅନ୍ଧକାର
ଅଜଣା ପଥରେ ରାସ୍ତା ଯାଏ ଭୁଲି
କେମିତି ହେବି ମୁଁ ପାର |-୧

ମନ୍ଦ ମନ୍ଦ ଜ୍ୟୋତି ଆଖିରେ ରହିଛି
ଭରିଛି ସମୁଦ୍ର ଜଳ
ନିଃଶବ୍ଦ ରାତିରେ ଘନ ଅନ୍ଧକାରେ
ମିଳେ ନାହିଁ ଥଳକୂଳ | -୨

ଥମି ଥମି ଯାଏ ନିଃଶ୍ୱାସ ମୋହର
ଏ ଯାଏ ମିଳିନି ରାହା
ଶଙ୍କାୟିତ ଧ୍ୟାନ ବାରମ୍ବାର ତୁଟେ
ତୁମେ ପ୍ରଭୁ ଏକା ସାହା |-୩

ବିଖଣ୍ଡିତ ଭକ୍ତି ଲୋଡା ନାହିଁ ମୋର
ଦିଅ ହେ ଅଖଣ୍ଡ ଭକ୍ତି
ମାୟା ମୋହ ସବୁ ଯାଉ ବହୁଦୂରେ
ତୁମଠାରେ ରହୁ ସ୍ଥିତି | -୪

ଧୀର ଧୀର ଗତି ଉଚ୍ଚ ପାହାଚ
କେମିତି ହେବି ମୁଁ ପାର
ହାତ ତୁମେ ଦେଇ ନିଅ ମୋତେ ଧରି
ଉଠାଇ ଦିଅ ଶିଖର | -୫

ଜଳି ଜଳି ସରି, ସରି ତ ଯାଉଛି
ଜୀବନର ଦୀପଶିଖା
ଇନ୍ଦ୍ରିୟର ସ୍ୱାମୀ ଇନ୍ଦ୍ରିୟକୁ ହରି
ଭବଜଳୁ କର ରକ୍ଷା | -୬

ତୁଟି ତୁଟି ଯାଏ ଲକ୍ଷ୍ୟ ମୋହର
ବାରମ୍ବାର ଘଟେ ଚ୍ୟୁତି
ଆହେ ବିଶ୍ୱପତି ଅଗତିର ଗତି
ଦିଅ ଏହି କ୍ଷଣେ ମୁକ୍ତି | -୭

ଓଁ ଶାନ୍ତି   ଧ୍ୟାନୀ ସାଧ୍ୱି

# କାଚ ଗୋଲକ



କୁହୁକ ଖେଳାଳୀ!
ରଚିଲ କି ଭେଳି,
ମାୟାର ପ୍ରହେଳି
ଅଚିହ୍ନା ଦେଶର ପାରେ
ରଖି କାଚ ଗୋଲକରେ
ନେଇଗଲ ତାର ଚାବି,
ଗଲି ମୁଁ ମାୟାରେ ଡୁବି;
ଯେବେ ଦେଖେ ଛାଇ ମୋର
କାଚ ଦିଶେ ଭୟଙ୍କର
କେମିତି ହେବି ମୁଁ ପାର ?
ଲୁଚି ଯାଏ ମୁହିଁ ଆପଣା ଭିତରେ
ନିଜ ଛାଇ ଲାଗେ ଡର | -୧

ବ୍ୟାକୁଳିତ ମନେ ଅଶ୍ରୁଳ ନୟନେ
ମୋହଜାଲେ ପଥ ଭୁଲି
ଯାଏ ଯେବେ ଦ୍ୱାର ଖୋଲି
ତୀକ୍ଷ୍ଣ ରଙ୍ଗୀନ୍ କାଚ
କରେ କ୍ଷତବିକ୍ଷତ
ସତ୍ତା ଭୁଲି ଯାଇ
ଚେତାଶୂନ୍ୟ ହୋଇ
ଭଗ୍ନ କାଚେ ହୁଏ ନାଲି | -୨

ପ୍ରେମ ଦୀପଶିଖା ଦେଖି
ଆଶାରେ ଯାଏ ମୁଁ ପତଙ୍ଗ ସମାନ ଲାଖି
ଆଲିଙ୍ଗନ ହେବା ଆଶେ
ଯାଏ ମୁହିଁ ଯେବେ ପାଶେ
ଡେଣା ମୋର ଯାଏ ଜଳି,
ଫେରି ଆସେ ମୁହିଁ
ବାଟ ଦେଖେ ଚାହିଁ
ତୁମେ କି ଆସିବ କୁହୁକ ଖେଳାଳୀ
ନେଇ ଯିବ ସଙ୍ଗେ
ଶାଶ୍ୱତ ଦୀପ ଜାଳି ? -୩

ସର୍ବେ ନିଜ ନିଜ ଭାଗ୍ୟେ, କର୍ମେ ବନ୍ଧା
ନିର୍ଜନତା ମୋର ସାଥୀ
ଝୁରେ ମୁଁ ଦିବସ ରାତି -
ଉଦାସୀନ ମନପ୍ରାଣେ,
ନିଦ୍ରା ଅବା ଜାଗରଣେ
ଅଳି ମୁଁ ତୁମକୁ କରେ -
ନେଇ ଯାଅ ମୋତେ କୋଳେ,
ଶୋଇଯିବି ସ୍ଥିର
ନିଦ୍ରାଦେବୀର
ଶାନ୍ତ, ଶୀତଳ, ସ୍ନିଗ୍ଧ ପଣତ ତଳେ | -୪

ନିଦ୍ରା ଯିବ ଯେବେ ତୁଟି
ଛାଡିଦେବ ମୋତେ ସେଠି,
ଅଖଣ୍ଡ ଦୀପଟେ ଜାଳି
ହୃଦୟରେ ମୋତେ ଭାଳି,
ବିରହ ସଙ୍ଗୀତ ଗାଉଥିବ ଯିଏ
ଅବିରତ ଅଶ୍ରୁ ଢାଳି
ଶ୍ରାବଣର ଧାରା ଧରି -
ଗିରିବନ ବୁକୁ ଚିରି
ବିରହୀ ଯକ୍ଷ ପରି | -୫

ଲୋଟି ଯିବି ଯେବେ ପ୍ରଣୟୀର ବକ୍ଷେ
କୋଟି ସୂର୍ଯ୍ୟଚନ୍ଦ୍ର ବୁଲୁଥିବେ କକ୍ଷେ,
ଲୁଟାଇବେ ଜ୍ୟୋତିରାଜି,
ସତ୍ତା ଯିବ ଆମ ହଜି,
ମିଶିଯିବା ଆମେ ପ୍ରୀତି ସାଗରରେ,
ଏକ ଆମେ ଯିବା ମଜ୍ଜି | -୬

ଓଁ ଶାନ୍ତିଃ ମ [illegible]

# ତୁମେ ତ ତୁମେ

ଏକା କଥା ଆଉ କେତେ ମୁଁ କହିବି
ଭଲ ପାଏ ବୋଲି ନିତି |
ଥରେ କହିଲେ କି ମନେ ରଖୁ ନାହଁ
ନାହିଁ କି ତୁମର ସ୍ମୃତି !-୧

ହୋଟେଲ ପାର୍କରେ ପାରିବିନି ଖର୍ଚ,
ଜାଣିଛ ତ ଦର ଦାମ |
ଫୋନ୍‌ରେ ପଇସା ନେଟ୍‌ରେ ପଇସା,
ବୁଲୁଛି ମୁଁ ରାତି ଦିନ |-୨

ତୁ' ପରୀ ବୋଲି କେତେ ମୁଁ କହିବି
ସଭିଏଁ ଏଠି ସୁନ୍ଦର |
ମିଛ କହି କହି ତୁଚ୍ଛାଟାରେ ଖାଲି
ନିଜେ ହେଲିଣି ବାନ୍ଦର |-୩

ତୁମେ ତ ତୁମେ...
କବିତା ବି ତୁମ ଦେଖି ତ ହବନି
ପଢ଼ି ବି ହବନି କେବେ
ତାକୁ ବି କହୁଛି ବହୁତ ସୁନ୍ଦର –
କେଡ଼େ ମୁଁ ଅଲଜ୍ଜା ଭାବେ |-୪

କେତେ ଆଉ ଗୁଣ ଗାଇବି ସଖୀ ମୁଁ –
ଆତ୍ମା ମୋ ଗଲାଣି ହଜି |
ମିଛ ଆଉ ଏବେ କହି ପାରିବିନି,
ଛାଡ଼ିଲି ତୋ ପ୍ରେମ ଆଜି |-୫

ଈଶ୍ୱରଙ୍କ ଯଦି ଏହିପରି କରେ
ରାତି ଦିନ ଗୁଣ ଗାନ |
ଜନମ ମୋହର ସଫଳ ହୋଇବ,
ସାର୍ଥକ ହେବ ଜୀବନ |-୬

ମଞ୍ଜୁବାଳା କବି ୦୪-୦୮-୨୦୧୬

# କେମିତି ଲେଖିବି କି କଥା  ଲେଖିବି

କେମିତି ଲେଖିବି କି କଥା  ଲେଖିବି ବେଳ ତ ଗଲାଣି ସରି;
ଦିନ ମଣି ଚଳେ ଚକ୍ରବାଳ କୋଳେ, ଅନ୍ଧାର ଆସୁଛି ଘେରି ||-୧

ଚାନ୍ଦିନୀ ନିଶୀଥ ସରାଗ କବିତା, ନିଦାଘ ଗ୍ରୀଷମ ଗାଥା,
ନବ ପଲ୍ଲବିତ କଳିକା କଥା କି ଝରା ଶେଫାଳିର ବ୍ୟଥା ||-୨

ବିଗତ ଉଚ୍ଛୁଳା ଯୌବନ କି ଅବା ଅସାର ସଂସାର ସତ୍ୟ;
କରମ ଜୀବନର ବିଭବ ଲେଖିବି, ଅକର୍ମେ ବା ହେବି ତୃପ୍ତ ?-୩

ଉର୍ମିମାଳୀ ଜଳ ତରଙ୍ଗ କଥା କି ସରୋବର ଶାନ୍ତ ନୀର,
ଜଳଦନନ୍ଦିନୀ ଗର୍ଜନ କି ଅବା  ମଉନ ଆକାଶ ଗିର  ?-୪

ଇନ୍ଦ୍ରଧନୁ ସପ୍ତବରଣ କି ଅବା ନିଃସଙ୍ଗ ଅସିତ ରାତି,
ମୃଗତୃଷ୍ଣା ହାହାକାର କାହାଣୀ କି ମିଛେ ଖୋଜିବରେ ତୃପ୍ତି ?-୫

ରଙ୍ଗମହଲ ଆସର ଗପ କି ନୀରବ ଲୋତକ ଝର,
ଉନ୍ମାଦ ପ୍ରେମ ଗୀତ ଲହର କି ସତ୍ୟ ଶିବ ସୁରୁଚିର !!-୬

ମଞ୍ଜୁବାଳା କବି ୨୦୧୭୦୯୨୧୬

# କେନ୍ଦ୍ରବିନ୍ଦୁ

ନେଇ ଯା' ରେ ସାଥୀ ଆସି
ନେଇ ଯା ତୁ ଦୂରେ
କିଏ କା' ଆଧାର ସାଥୀ
ସତ କହ ଥରେ...

ତୋର ବିନା ଏ ଆକାଶ ଘୁଞ୍ଚିଯାଏ ଦୂରେ
ପାଦତଳ ଧରାତଳ ଖସିଯାଏ ଧୀରେ
ଦିବସ ଆଲୋକ ହଜି ଯାଏ ଅନ୍ଧକାରେ
ଏକାକୀ ମୁଁ ଡରି ଯାଏଁ ବିରାଟ ଶୂନ୍ୟରେ

ନେଇ ଯା' ରେ ସାଥୀ ଆସି... 1

ଅସଂଖ୍ୟ ଯାତନା ଏଠି ସଦା ହାହା'କାର
ଫୁଲ ବି ଗୋଟିଏ ନାହିଁ କଣ୍ଟା ସମାହାର
ଦୃଶ୍ୟ ବି ତୋହର  ସାଥୀ ନୟନ ବି ତୋର
ମିଛଟାରେ ମୁଁ କିଏ ସବୁ ତ ତୋ'ହର

ନେଇ ଯା' ରେ ସାଥୀ ଆସି...  2

ମେରୁର ବରଫ ଶିଳା ତରଳେ ସାଗରେ
ତୋର ବିନା ପ୍ରିୟ ମୁଁ ଯେ ବୁଡିଯାଏ ନୀରେ;
ଦିଶେ ନା ତଳକୁ କିଛି, ଲାଗେନାହିଁ କୂଳେ;
ପାଏ ନାହିଁ ନିଜ ସ୍ଥିତି ଅସଂଖ୍ୟ କେନ୍ଦ୍ରରେ

ନେଇ ଯା' ରେ ସାଥୀ ଆସି ନେଇଯାତୁଦୁରେ;
କିଏ କା' ଆଧାର ସାଥୀ ସତ କହ ଥରେ...3

ମଞ୍ଜୁବାଳା କବି.ଓଁ ଶାନ୍ତି

# କେନ୍ଦ୍ରବିନ୍ଦୁ

ନେଇ ଯା' ରେ ସାଥୀ ଆସି
ନେଇ ଯା ତୁ ଦୂରେ
କିଏ କା ଆଧାର ସାଥୀ
ସତ କହ ଥରେ ।

ତୋର ବିନା ଏ ଆକାଶ
ଘୁଞ୍ଚିଯାଏ ଦୂରେ
ପାଦତଳ ଧରାତଳ
ଖସିଯାଏ ଧୀରେ
ଏକାକୀ ମୁଁ ଡରି ଯାଏଁ
ବିରାଟ ଶୂନ୍ୟରେ
ନେଇ ଯା'ରେ ସାଥୀ ମୋ... ||୧

ଅସଂଖ୍ୟ ଯାତନା ଏଠି
ସଦା ହାହା'କାର
ଫୁଲ ବି ଗୋଟିଏ ନାହିଁ
କଣ୍ଟା ସମାହାର

ଦୃଶ୍ୟ ବି ତୋହର ସାଥୀ
ନୟନ ବି ତୋର
ମିଛଟାରେ ମୁଁ କିଏ
ସବୁ ତ ତୋହର

ନେଇ ଯା' ରେ ସାଥୀ ଆସି... ||୨

ମେରୁର ବରଫ ଶିଳା
ତରଳେ ସାଗରେ
ତୋର ବିନା ପ୍ରିୟ ମୁଁ ଯେ
ବୁଡିଯାଏ ନୀରେ;
ଦିଶେ ନା ତଳକୁ କିଛି,
ଲାଗେନାହିଁ କୁଳେ;
ପାଏ ନାହିଁ ନିଜ ସ୍ଥିତି
ଅସଂଖ୍ୟ କେନ୍ଦ୍ରରେ ।
ନେଇ ଯା' ରେ ସାଥୀ ଆସି
ନେଇ ଯା ତୁ ଦୁରେ;
କିଏ କା ଆଧାର ସାଥୀ
ସତ କହ ଥରେ ||୩

ମଞ୍ଜୁବାଳା କବି. ଓଁ ଶାନ୍ତି

# କେନ୍ଦ୍ରବିନ୍ଦୁ

ନେଇ ଯା' ରେ ସାଥୀ ଆସି
ନେଇ ଯା ତୁ ଦୂରେ
କିଏ କା' ଆଧାର ରାଧେ!
ସତ କହ ଥରେ...

ତୋର ବିନା ଏ ଆକାଶ ଘୁଞ୍ଚିଯାଏ ଦୂରେ
ପାଦତଳ ଧରାତଳ ଖସିଯାଏ ଧୀରେ
ଦିବସ ଆଲୋକ ହଜି ଯାଏ ଅନ୍ଧକାରେ
ଏକାକୀ ମୁଁ ଡରି ଯାଏଁ ବିରାଟ ଶୂନ୍ୟରେ

ନେଇ ଯା' ରେ ସାଥୀ ଆସି... 1

ଅସଂଖ୍ୟ ଯାତନା ଏଠି ସଦା ହାହା'କାର
ଫୁଲ ବି ଗୋଟିଏ ନାହିଁ କଣ୍ଟା ସମାହାର
ଦୃଶ୍ୟ ବି ତୋହର ସାଥୀ ନୟନ ବି ତୋର
ମିଛଟାରେ ମୁଁ କିଏ ସବୁ ତ ତୋ'ହର

ନେଇ ଯା' ରେ ସାଥୀ ଆସି... 2

ମେରୁର ବରଫ ଶିଳା ତରଳେ ସାଗରେ
ତୋର ବିନା ପ୍ରିୟ ମୁଁ ଯେ ବୁଡିଯାଏ ନୀରେ;
ଦିଶେ ନା ତଳକୁ କିଛି, ଲାଗେନାହିଁ କୂଳେ;
ପାଏ ନାହିଁ ନିଜ ସ୍ଥିତି ଅସଂଖ୍ୟ କେନ୍ଦ୍ରରେ

ନେଇ ଯା' ରେ ସାଥୀ ଆସି ନେଇଯା ତୁଦୁରେ;
କିଏ କା' ଆଧାର ରାଧେ! ସତ କହ ଥରେ...3

ମଞ୍ଜୁବାଳା କବି.ଓଁ ଶାନ୍ତି

# କେନ୍ଦ୍ରବିନ୍ଦୁ

ନେଇ ଯା' ରେ ସାଥୀ ଆସି
ନେଇ ଯା ତୁ ଦୂରେ
କିଏ କା' ଆଧାର ସାଥୀ
ସତ କହ ଥରେ...

ତୋର ବିନା ଏ ଆକାଶ ଘୁଞ୍ଚିଯାଏ ଦୂରେ
ପାଦତଳ ଧରାତଳ ଖସିଯାଏ ଧୀରେ
ଦିବସ ଆଲୋକ ହଜି ଯାଏ ଅନ୍ଧକାରେ
ଏକାକୀ ମୁଁ ଡରି ଯାଏଁ ବିରାଟ ଶୂନ୍ୟରେ

ନେଇ ଯା' ରେ ସାଥୀ ଆସି... 1

ଅସଂଖ୍ୟ ଯାତନା ଏଠି ସଦା ହାହା'କାର
ଫୁଲ ବି ଗୋଟିଏ ନାହିଁ କଣ୍ଟା ସମାହାର
ଦୃଶ୍ୟ ବି ତୋହର ସାଥୀ ନୟନ ବି ତୋର
ମିଛଟାରେ ମୁଁ କିଏ ସବୁ ତ ତୋ'ହର

ନେଇ ଯା' ରେ ସାଥୀ ଆସି... 2

ମେରୁର ବରଫ ଶିଳା ତରଳେ ସାଗରେ
ତୋର ବିନା ପ୍ରିୟ ମୁଁ ଯେ ବୁଡିଯାଏ ନୀରେ;
ଦିଶେ ନା ତଳକୁ କିଛି, ଲାଗେନାହିଁ କୁଳେ;
ପାଏ ନାହିଁ ନିଜ ସ୍ଥିତି ଅସଂଖ୍ୟ କେନ୍ଦ୍ରରେ

ନେଇ ଯା' ରେ ସାଥୀ ଆସି ନେଇଯାତୁଦୁରେ;
କିଏ କା' ଆଧାର ସାଥୀ ସତ କହ ଥରେ...3

ମଞ୍ଜୁବାଳା କବି.ଓଁ ଶାନ୍ତି

-: କ୍ରନ୍ଦିତା କବିତା :-

କବିତା ଆଜି ମୁଁ ହୋଇଛି ଲୁଣ୍ଠିତା
ସର୍ବେ କଲେ ଅତ୍ୟାଚାର
ଭାଙ୍ଗିଗଲା ସବୁ ଅଳଙ୍କାର ମୋର
ଛନ୍ଦ,ତାଳ ହେଲା ପର (0)

ଆହେ ଭକ୍ତକବି,ପଲ୍ଲୀକବି ଆଉ
ନିତ୍ୟ ପ୍ରକୃତି କବି
କବିସମ୍ରାଟ୍,ଉତ୍କଳମଣି .....
କବିବର,ବ୍ୟାସକବି (୧)

କବିତା ତୁମର ରହିଛି ଅମର
ଅନ୍ଧାରେ ଆଲୋକ ଶିଖା
ଭାଷାକୁ ସୌନ୍ଦର୍ଯ୍ୟ,ଅଳଙ୍କାରେ ଭରି
ମଧୁରତା କଲ ରକ୍ଷା (୨)

କେତେ ଛନ୍ଦ-ରାଗେ,ଖଞ୍ଜି କବିତାକୁ
କରିଲ ଲାବଣ୍ୟବତୀ
ଯୌବନରେ ଭରି ଅପରୂପା ବେଶେ
ବିରାଜିଲେ ସରସ୍ୱତୀ (୩)

ଝଙ୍କାରେ ଝଙ୍କୃତ ଗାଇଲେ ସଙ୍ଗୀତ
ମନ୍ଦିରେ,ପୁରପଲ୍ଲୀରେ
ରଚିଗଲେ ନୃତ୍ୟ ଘୁଙ୍ଗୁରର ତାଳେ
ନର୍ତ୍ତକୀ ରଙ୍ଗମଞ୍ଚରେ (୪)

ନାହିଁ ଆଜି କିନ୍ତୁ ସେ ସୌନ୍ଦର୍ଯ୍ୟ ମୋର
ଲୋଟିଛି ଧରଣୀ ପରେ
ପ୍ରେମଭାବ ନାହିଁ କବିତାରେ ଆଉ
ଆକୁଳେ ମୋ ଅଶ୍ରୁ ଝରେ (୫)



---

Dhyanee Saattvi

## -: କ୍ରନ୍ଦିତା କବିତା :-

କବିତା ଆଜି ମୁଁ ହୋଇଛି ଲୁଣ୍ଠିତା
ସର୍ବେ କଲେ ଅତ୍ୟାଚାର
ଭାଙ୍ଗିଗଲା ସବୁ ଅଳଙ୍କାର ମୋର
ଛନ୍ଦ,ତାଳ ହେଲା ପର (୦)

ଆହେ ଭକ୍ତକବି,ପଲ୍ଲୀକବି ଆଉ
ନିତ୍ୟ ପ୍ରକୃତି କବି
କବିସମ୍ରାଟ୍,ଉତ୍କଳମଣି .....
କବିବର,ବ୍ୟାସକବି (୧)

କବିତା ତୁମର ରହିଛି ଅମର
ଅନ୍ଧାରେ ଆଲୋକ ଶିଖା
ଭାଷାକୁ ସୌନ୍ଦର୍ଯ୍ୟ,ଅଳଙ୍କାରେ ଭରି
ମଧୁରତା କଲ ରକ୍ଷା (୨)

କେତେ ଛନ୍ଦ-ରାଗେ,ଖଞ୍ଜି କବିତାକୁ
କରିଲ ଲାବଣ୍ୟବତୀ
ଯୌବନରେ ଭରି ଅପରୂପା ବେଶେ
ବିରାଜିଲେ ସରସ୍ୱତୀ (୩)

ଝଙ୍କାରେ ଝଙ୍କୃତ ଗାଇଲେ ସଙ୍ଗୀତ
ମନ୍ଦିରେ,ପୁରପଲ୍ଲୀରେ
ରଚିଗଲେ ନୃତ୍ୟ ଘୁଙ୍ଗୁରର ତାଳେ
ନର୍ତ୍ତକୀ ରଙ୍ଗମଞ୍ଚରେ (୪)

ନାହିଁ ଆଜି କିନ୍ତୁ ସେ ସୌନ୍ଦର୍ଯ୍ୟ ମୋର
ଲୋଟିଛି ଧରଣୀ ପରେ
ପ୍ରେମଭାବ ନାହିଁ କବିତାରେ ଆଉ
ଆକୁଳେ ମୋ ଅଶ୍ରୁ ଝରେ (୫)



---

**Dhyanee Saattvi**

# କୁସୁମ କଳି

କାନନେ ଉଦ୍ୟାନେ    କୁସୁମ କଳିକା
ରହି ନିଜ ବୃନ୍ତପରେ
ମାଦକତାଭରା    ସୁବାସ ଲୋଟାନ୍ତି
ଆନନ୍ଦିତେ ନିର୍ବିକାରେ |  -୧

ଧଳା, ନାଲି, ନୀଳ    ଯେତେ ରଙ୍ଗ ଫୁଲ,
ପ୍ରତିଯୋଗୀ ନୁହେଁ କେହି
ଅମୃତ, ସୁଗନ୍ଧ    ଦିଅନ୍ତି ଆନନ୍ଦେ
ନିଜ ନିଜ ସ୍ଥାନେ ରହି |  -୨

ନାହିଁ କିଛି ଜାତି,    ସମ୍ପ୍ରଦାୟ, ଗୋତ୍ର –
ତ୍ୟାଗଶୀଳତା ହିଁ ଧର୍ମ,
ବିତରି ଅମୃତ    କରିଥାନ୍ତି ତୃପ୍ତ:
ସେହି ଏକା ମହା କର୍ମ |  -୩

ଆକାର ଓ ରଙ୍ଗ    ଭିନ୍ନ ଭିନ୍ନ କିନ୍ତୁ
ଆନନ୍ଦ ଗୋଟିଏ ଜାତି,
କିଏ ବନପଥେ,    କିଏ ନଦୀତୀରେ,
କିଏ ବା ମନ୍ଦିର ସାଥୀ |  -୪





ଅଗ୍ନି-ଜଳ-ପୃଥ୍ୱୀ    ତାଙ୍କ ଚିର ସାଥୀ,
ପ୍ରକୃତି ସଭିଙ୍କ ସାହା,
ଲୁଟିଲେ ପ୍ରକୃତି    ରହେ ନାହିଁ ସ୍ଥିତି,
ଭାଙ୍ଗିଯାଏ ସବୁ ରାହା |  -୫

ନାହିଁ ବୈରୀଭାବ,    ଈର୍ଷ୍ୟା ଦ୍ୱେଷ ଲୋଭ,
ଆପଣା-ପରର ଭେଦ,
ଈଶ୍ୱର ସର୍ବଦା    ରହି ତାଙ୍କ ସାଥେ
କରୁଥାନ୍ତି ଆଶିର୍ବାଦ |  -୬

ଧରି ପୁଷ୍ପଗୁଣ    ଯେ କରେ ରମଣ
ସେ ତ ଈଶ୍ୱରଙ୍କ ପ୍ରିୟ,
ଧର୍ମ ଜାତି ଆଉ    ସମ୍ପ୍ରଦାୟ ବିନା
ସେ ରହେ ସଦା ଅଭୟ |  -୭

ଓଁ ଶାନ୍ତିଃ ମଞ୍ଜୁବାଳା କବି  (ଧାନୀ ସାଉ)

# ମଧୁଲଗନ

ଏ ମଧୁ ଲଗନେ ବାଜେ
କାହା ବଁଶୀ ସୁର
ଉନ୍ମାଦିନୀ ହେଲି ଛାଡି
ଘର ବାସ ମୋର |୧

ଜାଗି ନବ ଜାଗରଣେ
ନବ ରୋମାଞ୍ଚରେ
ଗାଇଲି ନବ ସଙ୍ଗୀତ
ସପ୍ତରସ ସୁରେ |୨

ଭାସିଗଲା ସେହି ସୁର
ଦୂର ବଳୟରେ
ଉଡ଼ିଲେ ପରାଗ ରେଣୁ
ଚଉଦିଗ ପାରେ |୩

ସ୍ୱର୍ଗପରୀ ଅବତରି
ଏ ଧରା ବକ୍ଷରେ
ନୃତ୍ୟକଲେ ମନ ଖୋଲି
ମୃଦୁମୃଦୁ ତାଳେ |୪

ଇନ୍ଦ୍ରଘର ପାରିଜାତ
ଫୁଟିଲେ ଧରାରେ
ଦିବା ରାତ୍ରୀ ଫୁଲ ସନ୍ଧି
ସମୟେ ଫୁଟିଲେ |୫

ଯୋଗୀ ଯତି ଯେତେ ଥିଲେ
ଭୁବନ ମଧ୍ୟରେ
ବସିଲେ ଉଚ୍ଚାରି ଓଁ
ଧ୍ୟାନସ୍ଥ ମୁଦ୍ରା ରେ |୬

ମଞ୍ଜୁବାଳା କବି

# ମଧୁପ ରାଜ



ଧରଣୀ ବକ୍ଷରେ ପାଦ ଅଛି ମୋର ମସ୍ତକେ ମୁକ୍ତ ଆକାଶ
ତା ମଧ୍ୟେ ଶୋଭିତ ସଲିଳ ସହିତ ଅଗ୍ନି, ବାୟୁ ପରକାଶ । -୧

ହୃଦୟ କନ୍ଦରେ ରହିଅଛ ତୁମେ ଅଚଳ ମଧୁପ ରାଜ,
ଲୁଚାଇ ରଖିଛ ପଞ୍ଚ ମହାକୋଷେ ମିଳନ ପଥର ସାଜ । -୨

ଶିରା ପ୍ରଶିରାରେ ବୁହାଇ ଦେଇଛ ଅମୃତର ମଧୁ ଧାରା,
ମଧ୍ୟରେ ମନକୁ ପ୍ରାଚୀର କରିଛ, ଦିଏ ନାହିଁ ତିଳେ ଧରା । -୩

ବେଳ ପୂରିଯିବ, ତୁମେ ଉଡିଯିବ ସଂସାର-ଅମୃତ ନେଇ,
ଶୂନ୍ୟ ରହିଯିବ ମଧୁତାଟ ଏଠି, ଚିତାରେ ଜଳିବା ପାଇଁ । -୪

ବାହୁଡିବ ପୁଣି ନୂଆ ତାଟ ଖୋଜି, ଧରି କର୍ମ-ଜ୍ଞାନେନ୍ଦ୍ରିୟ,
ହେ ଜନ୍ମ-ମରଣ-କଷଣ-ତାରଣ ମୋତେ ଏଥୁଁ ମୁକ୍ତି ଦିଅ । -୫

ଓମ୍ ଶାନ୍ତିଃ...

*ଧ୍ୟାନୀ ସାଧ୍ୱୀ* (ମଞ୍ଜୁବାଳା କବି) ୨୭ ସେପ୍ଟେମ୍ବର ୨୦୧୪

# ମଧୁର ବିଷ

ଓହ୍ଲାଇ ଆସିଲି ସଂସାର ଜଳେ
ଜଳ ଛଳ ସେଠି କପଟ ଚଳେ ||୧||
ପାନ କଲି ଛାଣି ମଧୁ କଳସ
ମଧୁ ନୁହେଁ ସେ ତ ମଧୁର ବିଷ ||୨||

ବାସ-ପୁଷ୍ପେ ଯେତେ ମାରିଲି ହାତ
କାଟେ ବିଷକୀଟ ହେଲି ରକ୍ତାକ୍ତ ||୩||
ମହୁ-ବାସ ଗଲି ମଧୁର ଆଶେ
ମଧୁ ଚୌକିଦାର ହାତରେ ଦଂଶେ ||୪||

ତୃଷାତୁରେ ଗଲି ସାଗର ଘର
କପଟେ ଦେଲା ସେ ଖାରୁଆ ନୀର ||୫||
ଘୂରି ଘୂରି ଆସି ବସିଲି ସ୍ଥାନେ
ଥିଲା ସେଠି ଖାଲି ଶ୍ମଶାନ ଦିନେ ||୬||

ଏମିତି ସ୍ଥାନ ମୁଁ ପାଇଲି ନାହିଁ
ଯେଉଁଠାରେ କେହି ପୋତା ଯାଇନି ||୭||
ଦେଖି ଉଡ଼ି ଗଲି ଆକାଶ ଦେଶେ
ଦେହ ଘୂମି ମୋର ପଡ଼ିଲା ଶେଷେ ||୮||

ମଞ୍ଜୁବାଲା କବି ୨୪-୭-୨୦୧୬

# ମଧ୍ୟବିନ୍ଦୁ

ନ ଆ' ଅତି ପାଶେ ସଥୀ ନ ଯା' ଅତି ଦୂରେ
ମଧ୍ୟବିନ୍ଦୁଠାରେ ରହି ଚାହାଁ ଥରେ ଥରେ | -୧-

ଅତି ପାଶେ ଆସିଲେ ତୁ ହୋଇଯିବି ସାକ୍ଷୀ
ଦେଖି ପାରିବିନି ତୋର ରୂପ ମନ ଲାଖି | -୨-

ଅତି ଦୂରେ ଗଲେ ଚାଲି ନ ପାଇବ ଆଖି
କେତେ ଅଛି ଶକତି ମୋ' ପାରିବି ନିରେଖି | -୩-

ଚାରି ପାଶେ ମୋର ଖାଲି ନଗ୍ନ ଅନ୍ଧକାର
ଧୂଆଁ ଧୂଆଁ ଦିଶେ ସବୁ ଭଙ୍ଗୁର ସଂସାର | -୪-

କଳ୍ପନାରେ ଉଡ଼ିବୁଲେ ତୋତେ ଖୋଜିବାକୁ
ମରୀଚିକା ପରି ଯାଉ ଦୂରକୁ ଦୂରକୁ | -୫-

ଦୂର ଆକାଶରୁ ଶୁଭେ ନିଷ୍ଫଳ ଆଳାପ
ଶ୍ରବଣରେ ବାଜେ ନିଜ ଅବିଦ୍ୟା ସଂଳାପ | -୬-

ତେଣୁ ଆଗୋ ସାଥୀ ନ ଥା ନିକଟେ କି ଦୂରେ
ମଧ୍ୟବିନ୍ଦୁଠାରେ ରହି ଚାହାଁ ଥରେ ଥରେ | -୭-

**ମଞ୍ଜୁବାଳା କବି ଓଁ ଶାନ୍ତିଃ**

# ମନ ଓ ନିର୍ମୂଳି

ନାହିଁ ତାର ଆଦିମୂଳ, ନାଆଁ ଟି ନିର୍ମୂଳି
ଅନ୍ୟ ବୃକ୍ଷପରେ ତାର ପ୍ରାଣର ଶିକୁଳି | -୧

ଯା ଉପରେ ପଡେ ସିଏ, ଶୋଷେ ତା' ଜୀବନ
ଦୟାମାୟା ଜାଣେ ନା ତା ସ୍ୱାର୍ଥପର ମନ | -୨

ନିର୍ମୂଳି ଓ ମଣିଷର ମନ ସମଧର୍ମ
ଆଚରଣରେ ନାହିଁ ତାଙ୍କ ଦୟାଧର୍ମ | -୩

ମନ ଟି ତ ମଣିଷକୁ ଛାଡେ ନାହିଁ ଜମା,
ମୃତ୍ୟୁ ସଙ୍ଗେ ଯାଏ ସିଏ, ଦିଏ ନାହିଁ କ୍ଷମା | -୪

ନାହିଁ ତା'ର ସ୍ଥିତି କିନ୍ତୁ ପ୍ରଚଣ୍ଡ ସବଳ,
ଜନ୍ମ ପରେ ଜନ୍ମ ନେଇ ଖେଳେ ତା'ର ଖେଳ | -୫

ଶବ୍ଦ ସଙ୍ଗେ ଶବ୍ଦ ଯୋଡି, ଭାବନାକୁ ଟାଣେ
ରଖେ ନିଜ ପ୍ରତିପତ୍ତି ନିଜ ଟାଣ ପଣେ | -୬

ଚିନ୍ତା ଭାବନାରୁ ସିଏ ନିଏ ଖାଦ୍ୟଶକ୍ତି,
ସେ ଶକ୍ତି ଆହାର କରି ପାଏ ସେ ତୃପତି | -୭



'ମୋ ମନ' ସବୁଠୁ ଉଚ୍ଚ, ପ୍ରମାଣ ତା' ଦିଏ,
ନିଜେ ନିଜକୁ ପ୍ରଶଂସି ପ୍ରଫୁଲ୍ଲିତ ହୁଏ | -୮

ନିନ୍ଦାରେ ସେ ମ୍ରିୟମାଣ, ସ୍ତୁତିରେ ଉତ୍ଫୁଲ୍ଲ,
ଚାଲିଥାଏ ସୀମାହୀନ ମନର ଏ ଖେଳ | -୯

ମୃତ୍ୟୁ ପରେ ଜୀବ ସଙ୍ଗେ ଯାଏ ତା' ସାଙ୍ଗରେ,
ଜନ୍ମ ଜନ୍ମାନ୍ତର ତାହା ସାଥୀରେ ବିଚରେ | -୧୦

ସତ୍ୟଦ୍ରଷ୍ଟା ସବୁ ଏହା ଖେଳ ବୋଲି ଜାଣି,
ଶବ୍ଦର ମାୟାଜାଲକୁ ଛିଣ୍ଡାନ୍ତି ସେ କ୍ଷଣି | -୧୧

କେବଳ ଗୋଟିଏ ଶବ୍ଦ "ପ୍ରଣବ" ଉଚ୍ଚାରି
ବସନ୍ତି ଆନନ୍ଦ ଚିତ୍ତେ "ବ୍ରହ୍ମ"ରେ ବିଚରି | -୧୨

ଓଁ ଶାନ୍ତିଃ ମଞ୍ଜୁବାଳା କବି (ଧାନୀ ସାକ୍ଷି)

# ମନ-ରଙ୍ଗିଣୀ

ଚାରୁଚନ୍ଦ୍ରମାର ଶୀତଳ କିରଣ,
ବିଚ୍ଛୁରି ପଡୁଛି ଏ ସାରା ଗଗନ,
କିଏ କହେ ତାକୁ ସୂରୁଜ ଘରଣୀ,
କିଏ କହେ ପୁଣି ଆକାଶ ବନ୍ଦିନୀ,

କିନ୍ତୁ ମୁଁ ଜାଣେ:
କବି ହୃଦୟେ ସେ ଆରାଧ୍ୟ ସ୍ବଜନୀ ||-୧

ପ୍ରେମୀର ପ୍ରେମିନୀ ମାନସରଙ୍ଗିଣୀ,
ଇନ୍ଦ୍ରଚାପ ତୁଲ୍ୟ ରଙ୍ଗିମା ଧାରିଣୀ,
କିଏ କହେ ତାକୁ ସ୍ବପ୍ନ ନିର୍ଝରିଣୀ,
କିଏ କହେ ପୁଣି ନିଶୀଥର ରାଣୀ,

କିନ୍ତୁ ମୁଁ ଜାଣେ:
ଜୀବନ ପ୍ରବାହେ ସେ ମୁକ୍ତି-ଦାୟିନୀ ||-୨

ପ୍ରକୃତି-ରୂପସୀ, କାବ୍ୟପ୍ରଦାୟିନୀ,
ଅଙ୍ଗେ ଅଙ୍ଗେ ଯା'ର ଶୃଙ୍ଗାର ରାଗିଣୀ,
ନିତି ରଚି ଚାଲେ କବିର ଲେଖନୀ,
କିଏ କହେ ତାକୁ ମିଳନ ବନ୍ଧନୀ,

କିନ୍ତୁ ମୁଁ ଜାଣେ:
ଆଦି ସୃଷ୍ଟିର ସେ ମୁଖ୍ୟ-ଆଧାରିଣୀ ||-୩

ମଞ୍ଜୁବାଳା କବି
(ଧାନୀ ସାତ୍ତ୍ୱୀ)







# ମା ଗର୍ଭେ ଶିଶୁ

ଜନନୀର ଗର୍ଭେ ସୁକୋମଳ ଶିଶୁ
ଥାଏ ମହା ଆନନ୍ଦରେ
ନିଃଶ୍ଵାସ-ପ୍ରଶ୍ଵାସ ମାତାଠାରୁ ନିଏ,
ଆହାରେ ହରଷ ଭରେ |   -୧

ଭାସୁଥାଏ ସେ ଯେ ଜଳଜ ସମାନ,
ନିଷ୍ପାପ ନିଶ୍ଚଳ ପ୍ରାଣେ,
ଯେପରି କି ବିଷ୍ଣୁ ଥାଆନ୍ତି ପ୍ରଫୁଲ୍ଲ
ମଗ୍ନ ଅନନ୍ତ ଶୟନେ |   -୨

ସେ ଅମୃତମୟ ସ୍ପନ୍ଦନର ଗତି
ମାତାଙ୍କର ଗର୍ଭେ ଦେଇ
ଜାଣେ ଏକା ମାତା ସେ ଗତି ତରଙ୍ଗ,
ଜାଣେ ନାହିଁ ଅନ୍ୟ କେହି | -୩

ସମୟ ପ୍ରଭାବେ ମାତାର ଗର୍ଭରୁ
ପୃଥ୍ଵୀପରେ ଅବତରି
ଚତୁର୍ଦ୍ଦିଗେ ଦୃଶ୍ୟ ସୁରମ୍ୟ ଜଗତ,
ଅନୁଭବେ ନିଜପରି |   -୪

ସ୍ମୃତିରୁ ତାହାର ଧୀରେ ଧୀରେ ଯାଏ
ପୂର୍ବଜନ୍ମ ଅପସରି
ନିଜସ୍ଵ ସଂସ୍କାରେ କର୍ମ କରିଯାଏ
ସଂସାର ମଧ୍ୟେ ବିଚରି |   -୫

ଓଁ ଶାନ୍ତିଃ   ଧ୍ୟାନୀ ସାଦ୍ଵି (ମଞ୍ଜୁବାଳା କବି)

# ମିଥ୍ୟା ଜଗତ

ଜଗତ ମିଥ୍ୟା ଶରୀର ମିଥ୍ୟା
ସଂସାର ତୁମର ମିଥ୍ୟା
ସକଳ ମିଥ୍ୟା ଭିତରେ ରଖିଛ
ସନାତନ ସତ୍ୟଗାଥା | -୧

ତାଆସ୍ ପତ୍ତାରେ ଗୁଲାମ ଟୀକ୍କା
ରାଜା ରାଣୀ ଦିଅ ରଖି
କିଏ କା ଉପରେ ରଙ୍ଗ ମାରି ଦିଏ –
ଖେଳାଉଛ ମନଲାଖି | -୨

କସ୍ତୁରୀ ସମାନ ଲୁଚାଇଛ ସତ୍ୟ
ଅନ୍ତର ଗହ୍ବର ତଳେ
ଅନ୍ବେଷଣ କରି ବାହାର ଜଗତେ
ଚତୁର୍ଦ୍ଦିଗେ ଘୂରି ବୁଲେ | -୩

ଅଲକ୍ଷ୍ୟରେ ଥାଇ ଜୀବନ ନାଟକ
ତୁମେ ଲେଖ ପ୍ରଥମରେ
ସେ ଇଙ୍ଗିତେ ଆମେ କଳାକାର କରୁ
ଅଭିନୟ ପୃଥ୍ବୀରେ | -୪

ବୁଡିଅଛୁ ଆମେ ଜଳେ ମୀନ ସମ
ଦାରୁଣ ତୃଷାର୍ତ୍ତ ହୋଇ
ହେ କୃପାସାଗର କରିଦିଅ ପାର
ତୁମ କୃପାବିନ୍ଦୁ ଦେଇ | -୫

*ଓଁ ଶାନ୍ତିଃ ଧାନୀ ସାକ୍ଷି (ମଞ୍ଜୁବାଳା କବି)*



# ମିଥ୍ୟାସତ୍ୟ

ମିଥ୍ୟା- ପ୍ରେମ ଠାରୁ  ବର୍.ଂ
ସତ୍ୟ - ଘୃଣା ଭଲ
ଉଦାସୀନେ ଉପେକ୍ଷିତେ
ଛିଣ୍ଡେ ମାୟାଜାଲ |୧

ସହସ୍ର ମିଥ୍ୟା ଠୁ ଭଲ
ଏକ ସତ୍ୟ କଥା
ସୃଷ୍ଟି ଚକ୍ରେ ଏକ ସତ୍ୟ
ବ୍ରହ୍ମନ୍ ସତ୍ୟ ଜଗତ୍ ମିଥ୍ୟା |୨

ମଞ୍ଜୁବାଲାକବି. ଓଁଶାନ୍ତିଃ

# ମୋହିନୀ କବିତା

କେମିତି ରଚିବି ଆଗୋ ମୋହିନୀ କବିତା
ନାହିଁ ପାଖେ କିଛି ମୋର ଶବ୍ଦର ସରିତା | ୧

ଖଞ୍ଜିନାହିଁ ଅଙ୍ଗେ ଅଙ୍ଗେ ଦେଇ ଅଳଙ୍କାର
କିପରି କରିବି ନାନା ରୂପେ ତୋ ଶିଙ୍ଗାର | ୨

ତୁମେ ହିଁ ଲାବନ୍ୟବତୀ ତୁମେ ଅନୁପମା
ଛନ୍ଦେ ଛନ୍ଦେ ପଦେ ପଦେ ଦେଖାଅ ରଙ୍ଗୀମା |୩

ମୋତେ କିମ୍ବା ଦିଅନାହିଁ ତୁମରି ଲାଲିମା
କେଉଁ ରୂପେ ରଙ୍ଗାଇବି ତୁମରି ଭଙ୍ଗିମା |୪

ବେଦ ଶ୍ରୁତି ଶାସ୍ତ୍ର ମଧ୍ୟେ ତୁମେ ହିଁ ଆପ୍ଳୁତା
ଏକାକ୍ଷର ଓଁ କାରରେ ତୁମେ ହିଁ ନିଃସୃତା |୫

ଅବିଚ୍ଛିନ୍ନ ଗାଇ ଝର କବିତା ମାଳିକା
ଝରାଅ ଆଜି ମୋହର ଅନ୍ତରୁ ଗୀତିକା |୬

ମଞ୍ଜୁବାଳା କବି ୧୭-୭-୨୦୧୬

# ମୃତ୍ୟୁ

ମୃତ୍ୟୁ ଏକ ଅଟେ ଜୀବନର ସତ୍ୟ
ଆଉ ଯେତେ ସବୁ ମିଥ୍ୟା
ଜାତିଭେଦ ନାହିଁ ତାହାର ଜଗତେ,
ଗୁଣୀ ଜ୍ଞାନୀ ସବୁ ମିଥ୍ୟା |-୧
ଭଲପାଇ ସିଏ ସଭିଙ୍କୁ କୋଳାଏ
ନ ରଖେ ବାଛବିଚାର
ଗୋପାଳକ ପରି ଅଡାଇ ନିଏ ସେ
ସନ୍ଧ୍ୟା ହେଲେ ଜୀବନର |-୨

ସଭିଙ୍କର ବ୍ୟଥା କରିଥାଏ ଦୂର
ଯନ୍ତ୍ରଣାରୁ କରେ ମୁକ୍ତ,
କିନ୍ତୁ ମୃତ୍ୟୁଦେବୀ କେବେ ଶୁଏ ନାହିଁ,
ସର୍ବଦା କର୍ମରେ ଲିପ୍ତ |-୩
ସମସ୍ତଙ୍କ ପାଶେ ସଦା ରହିଥାଏ,
ଛାଡି ଯାଏ ନାହିଁ କେବେ
ଜାଣନ୍ତି ସଭିଏଁ, ନ ଜାଣିଲା ପରି
ଉଡୁଥାନ୍ତି ମହା ଗର୍ବେ |-୪

ନିଏ ଖାଲି ଦେହ - ନିଏନି ସଂସ୍କାର,
ଅହଂ, ବୁଦ୍ଧି ଆଉ ମନ,
ଘେନି ଏ ସବୁକୁ ଫେରି ଆସେ ଜୀବ
ଧରି ନୂତନ ଜୀବନ |-୫
ଜନ୍ମଠାରୁ ମୃତ୍ୟୁ ମୃତ୍ୟୁଠାରୁ ଜନ୍ମ –
ଚାଲିଥାଏ ମହାମେଳା
ମନ, ବୁଦ୍ଧି, ଅହଂ ବିସର୍ଜିତ କଲେ
ସରେ ମୃତ୍ୟୁଦେବୀ ଲୀଳା |-୬



ଚିରକାଳ ପାଇଁ ଲୀନ ହୁଏ ମୃତ୍ୟୁ,
ଜୀବତ୍ୱର ହୁଏ ନାଶ,
ରହିଯାଏ ଖାଲି ଚିରନ୍ତନ ସତ୍ୟ,
ଆଲୋକର ପରକାଶ |-୭

ଓଁ ଶାନ୍ତିଃ ଧ୍ୟାନୀ ସାଧ୍ୱି (ମଞ୍ଜୁବାଳା କବି)

# ମୃତ୍ୟୁଯାତ୍ରୀ

ଆମେ ତ ଏଇଠି ମୃତ୍ୟୁପଥ ଯାତ୍ରୀ ବେହୋସରେ ଥାଉ ସର୍ବେ
ନୟନରେ ବନ୍ଧା ଅନ୍ଧ ପୁତୁଳି ଫିଟେ କା'ର କାଳେ କେବେ ||୧||

କିଏ ଏଠି ହାରେ କିଏ ଅବା ଜିତେ, କେ ରଖେ କାହା ହିସାବ,
ଠେଲା ଠେଲି ହୋଇ ଆଗକୁ ଚଳନ୍ତି ଦେଖାନ୍ତି ସ୍ୱ-ପରାଭବ ||୨||

ଏକମାତ୍ର ରସି ଅଦୃଶ୍ୟରେ ଥାଇ ବାନ୍ଧିଅଛି ସମସ୍ତଙ୍କୁ,
ନିଜ ମାୟାଜାଲେ ନିଜେ ପଡ଼ିଥାଉ, ଜାଣି ହୁଏ ନାହିଁ ତାକୁ ||୩||

ଆଜି ଯେ ନିଜର କାଲି ହୁଏ ପର, କେହି ନୁହେଁ ଚିରମିତ;
କର୍ମେ ଓ ସଂସ୍କାରେ ସର୍ବେ ଛନ୍ଦାଛନ୍ଦି ଅହଂକାରେ ଓତପ୍ରତ ||୪||

କିଏ ଅଛ କାହିଁ ଖୋଲି ଦିଅ ଆସି ମାୟାର ଅନ୍ଧପୁତୁଳି,
ଫିଟାଅ ଶୃଙ୍ଖଳ ଛିଣ୍ଡୁ ମୋହଜାଲ, ଆଲୋକ ଆସୁ ଉଚ୍ଛୁଳି ||୫||

ମଞ୍ଜୁବାଳା କବି

ଓଁ ଶାନ୍ତିଃ

# ମୁଖ-ପୁସ୍ତିକାର ଗାଥା

ଅନ୍ତର- ମୋହରେ ଅନ୍ତର-ଜାଲରେ
ଯାଉଛି ଅନ୍ତର ମୋହି
ପଡ଼ି ସେ ଜାଲରେ ମୁଖ-ପୁସ୍ତିକାରେ
ଯାଉଅଛି କାତ ବାହି |-୧-

ଧରା ତଳେ ନାହିଁ, ନାହିଁ ଗଗନରେ
ମୁଖ-ପୁସ୍ତିକାରେ ରହି
ମୁଖମାନେ ସବୁ ପ୍ରୋଫାଇଲ୍‌ରେ ଥାଇ
ହୃଦୟ ଦିଅନ୍ତି ଫେଇ |-୨-

ଚାଟ୍ ମାଧ୍ୟମରେ ସଫା କରିଥାନ୍ତି
ହୃଦୟର ପୀଡ଼ା ଗାଥା,
ମେସେଜ୍‌ରେ ସବୁ ଦୂର ହୋଇ ଯାଏ
ମନ ଓ ତନର ବ୍ୟଥା |-୩-

ଲାଇକ୍ କୋମେଣ୍ଟ୍ ଏଠି ବଡ଼ ଭାଗ୍ୟ
ସ୍ୱର୍ଗ ସୁଖ ପରି ଝରେ
କମ୍ ବେଶି ହେଲେ ସେଥିରୁ କେବେ ବା
ନୟନରୁ ନୀର ଝରେ |-୪-

ରଣାଙ୍ଗନ ସମ ବୀର ପରାକାଷ୍ଠା
ଦେଖାନ୍ତି ଏଠାରେ ରହି
ମର୍କଟ ସମାନ କରୁଥାନ୍ତି ନାଟ
ମଳୟର ଗୀତି ଗାଇ |-୫-

ଯିଏ ଜେତେ ପେଜ୍, ଗ୍ରୁପ୍‌ର ମାଲିକ
ସେ ବଡ଼ ମହାନ ଲୋକ;
ଆନନ୍ଦିତ ମନେ କଟି ଯାଏ ଦିନ,
ସେହି ଏକା ଭାଗ୍ୟବନ୍ତ |-୬-

ନ ଥାନ୍ତା ଯଦି ଏ ଶ୍ରୀମୁଖ-ପୁସ୍ତିକା
ରହନ୍ତେ କିପରି ଜନ ?
ସ୍ୱର୍ଗ ଛାଡ଼ି ନର୍କେ ସର୍ବେ ଚଳି ଯାନ୍ତେ
ଆୟୁଷ ହୁଅନ୍ତା କ୍ଷୀଣ |-୭-

ମଞ୍ଜୁବାଳା କବି ୧୮-୭-୨୦୧୬

# ମୁକ୍ତିର ସଂଗୀତ

ଗାଅ ଆଜି କବି ତୁମେ
ସତ୍ୟର ସଂଗୀତ
ବେଦ ଶ୍ରୁତି ଦର୍ଶନେ ଯା’
ପ୍ରତ୍ୟକ୍ଷ ଦର୍ଶିତ |
-୧
ଶୁଣାଅ କି ଲାଗି ଆଉ
କଳ୍ପନାର ଗୀତ
କଳ୍ପନାରେ କୋଟୀ ଜନ୍ମ
ହେଲାଣି ବ୍ୟତୀତ |
-୨
ଚନ୍ଦ୍ରମାରେ କର ନାହିଁ
ଆଉ ଜ୍ୟୋତ୍ସ୍ନା ପାନ
ସେ ଜ୍ୟୋତ୍ସ୍ନାରେ ଲେଖି ଦିଅ
ଶାଶ୍ୱତ ସନ୍ଧାନ |
-୩

ଫୁଟାଅନା ଆଉ କବି
ଶିଳା ମଧ୍ୟେ ପଦ୍ମ
କୋଟୀ ପଦ୍ମ ଆଙ୍କି ହୃଦେ
କର ଜ୍ଞାନ ଦାନ |
-୪
ଭ୍ରମରେ ଭ୍ରମିତ ହୋଇ
ଭ୍ରମ ନାହିଁ ମନ
ଭର ନାହିଁ ଆଉ ମନେ
ଶବ୍ଦର ବ୍ୟଞ୍ଜନ |
-୫
ଶବ୍ଦ ଶ୍ଳୋକେ ଲେଖି ଦିଅ
ମହା ବିଦ୍ୟା ସତ୍ୟ
ଅବିଦ୍ୟାର ଅନ୍ଧକାର
ହେଉ ତିରୋହିତ |-୬

ତାପ କ୍ଳେଶ ବ୍ୟଥା ଗୀତ
ଗାଅ ନାହିଁ କବି
ଚେତନାର ଗୀତ ଗାଅ
ହସୁ ଏ ପୃଥିବୀ |
-୭
ସତ୍ୟ-ଶିବ-ସୁନ୍ଦରର
ଝରାଅ ସଂଗୀତ
ଦିଗନ୍ତ ବିସ୍ତାରି ହେଉ
ସେ ପ୍ରତିଫଳିତ |
-୮
ସେ ଓଁକାର ପ୍ରତିଧ୍ୱନି
ଶୁଣୁ ସର୍ବ ଭୂତ
ଗାଅ ଆଜି ଗାଅ କବି
ମୁକ୍ତିର ସଂଗୀତ |
-୯
ମଞ୍ଜୁବାଳା କବି
୧୩ ଜୁଲାଇ ୨୦୧୬

# ମୁଁ ଏକା ଝଙ୍କାର

ଏ ନାଟ ମନ୍ଦିରେ, ମୁଁ ଏକା ଝଙ୍କାର;
ଗାଇ ଯା ରେ ଆଜି ସାଥୀ ପା-ଧା-ନି-ସା ସୁର |
ଏ ନାଟ ମନ୍ଦିରେ....

ମାଦକତା ଭରା ନୟନେ ମୋହର
ଅପଲକ ଖୋଜେ ତୋର ତାଳ ଲୟ ସୁର |
ଧୀରେ ଧୀରେ ମ ଉଳିଲା ମୋର ଏ ଶିଙ୍ଗାର
ଅଧା ରହିଗଲା ମୋର ଅଧା ଅଭିସାର |
ଏ ନାଟ ମନ୍ଦିରେ ....

ମୁଁ ତୁମ ମନ୍ଦିରରେ ଅଳସୀ ନାୟିକା
ରଙ୍ଗଭରା ରଜନୀରେ ମୁଁ ଏକା ରାଧିକା |
ଗାଇ ଯା ରେ ଆଜି ସାଥୀ ଅନ୍ତହୀନ ସୁର
ସେ ସୁରରେ ରଚି ଯିବି ସହସ୍ର ଝଙ୍କାର |
ଏ ନାଟ ମନ୍ଦିରେ....

ଟଳମଳ ପାଦ ମୋର ଲାଗେ ନାହିଁ ତାଳେ
ତଥାପି ମୁଁ ନାଚୁଅଛି ଅଗଣିତ ସୁରେ |
ଘୂରି ଯାଏ ଧରା ତଳ ଝୁମୁଛି ଅମ୍ବର
ନିଶାତୁରା ହେଲି ମୁହିଁ ଦିଶିଲା ଅନ୍ଧାର |
ଏ ନାଟ ମନ୍ଦିରେ....

ତୁମେ ଏକା ସାଥୀ ମୋର ତୁମେ ହିଁ ଦର୍ଶକ
ନୟନେ ପୁଲକ ତୁମେ ତୁମେ ହିଁ ପୁଲକ |
ଶିହରଣ ତୁମେ ମୋର ମୁଁ ତୁମ ଶରୀର
ବରି ନିଅ ଏ ରାତ୍ରୀରେ କରି ଗଳା ହାର |
ମୁଁ ଏକା ଝଙ୍କାର...
ଏ ନାଟ ମନ୍ଦିରେ ସାଥୀ ମୁଁ ଏକା ଝଙ୍କାର
ଗାଇ ଯା ରେ ଆଜି ସାଥୀ ପାଧାନିସା ସୁର

ମଞ୍ଜୁବାଳା କବି
ଜୁଲାଇ ୧୬, ୨୦୧୬

# ନାରଦଙ୍କ ଫେସବୁକ ପ୍ରୀତି

## ୧ମ ଅଧ୍ୟାୟ

ନାରଦ କହନ୍ତି ଆସି - ଶୁଣ ଭଗବାନ
ମର୍ତ୍ତ୍ୟଲୋକେ କିମ୍ପାଁ ଦେଲ ଫେସବୁକ ଜ୍ଞାନ ? :୧

ଶ୍ରୀ ହରି କହନ୍ତି ହସି - ଦେବର୍ଷି ନାରଦ !
ସେଠାରେ ନାହିଁ ପର-ଆପଣାର ଭେଦ | :୨

ଫୁଲରୁ ଫୁଲେ ଭ୍ରମର କରେ ଗୁଞ୍ଜରଣ,
ବସନ୍ତ ସର୍ବଦା ସେଠି କରେ ବିଚରଣ | :୩

ପ୍ରେମିକ ପ୍ରେମିକା ସେଠି ଅବାଧ ରୀତିରେ
ଶେୟାର୍, ଲାଇକ୍ କରନ୍ତି ଦିନ-ରାତି ନିର୍ଭୟରେ | :୪

ବାପା-ମାଆ-ପିଲା-ଛୁଆ ହରଷ ମନରେ
ଭ୍ରମର ସାଜି ଉଡନ୍ତି ସବୁ ପ୍ରୋଫାଇଲ୍ ରେ | :୫

ଜନ୍ମଜନ୍ମାନ୍ତର ସାଥି ସେଠି ଖୋଜାଚାଲେ,
ରାଣ ଖାଇ ସତ୍ୟପାଠ କରନ୍ତି ଚାଟରେ | :୬

କେତେ ପ୍ରେମୀ, ଦେଶପ୍ରେମୀ, ଜ୍ଞାନୀ, ଗୁଣୀ, ଭକ୍ତ
ସମସ୍ତେ ଏକତ୍ର ତହିଁ ହୁଅନ୍ତି ମିଳିତ | :୭

ସର୍ବ ଗୁଣ ସର୍ବ ଧର୍ମ ମିଳନର ସ୍ଥଳି
ସ୍ୱର୍ଗୀୟ ପ୍ରେମ ସେ ସ୍ଥାନେ ପଡୁଛି ଇଛୁଳି | :୮

ଶୁଣି ଏ ବାଣୀ ଦେବର୍ଷି ପ୍ରଫୁଲ୍ଲିତ ମନ
ଫେସ୍ ବୁକ୍ ଖୋଲି ଆଡ୍ କରି ଚାଲିଲେ ପ୍ରେରଣ | :୯

ପ୍ରଭୁଙ୍କ ପରୀକ୍ଷା ଏହା - ଯେତେ ବୁଝାଇଲି,
ନ ଶୁଣି କହିଲେ - "ଧ୍ୟାନୀ ଦୋଷଦର୍ଶୀ" ବୋଲି | :୧୦

ଓଁ ଶାନ୍ତିଃ ଧ୍ୟାନୀ ସାଦ୍ଧି (ମଞ୍ଜୁବାଳା କବି)





# ନାରଦଙ୍କ ଫେସ୍ ବୁକ୍ ପ୍ରୀତି: ୨ୟ ଅଧ୍ୟାୟ

ଗାଳି କରି "ଧାନୀ ତୁମେ
ଦୋଷଦର୍ଶୀ" ବୋଲି
ଦେବର୍ଷି ନାରଦ ଗଲେ
ଫେସବୁକ୍ ଖୋଲି |-୧

ଦେଖିଲେ ସେଠି,
ନାହିଁ ତ ରାତି,
ଚିର ବସନ୍ତ
ହୁଏ ଆତଯାତ,
ରଙ୍ଗରସ ଭରା
ପ୍ରୋଫାଇଲ୍ ସାରା,
ଛଇଳିଛବିଳ
ଦିଶେ ଅନ୍ତର୍ଜାଲ (ଇଣ୍ଟର୍ନେଟ୍)
ସୌନ୍ଦର୍ଯ୍ୟ କାନ୍ତିରେ ଭରା;
କି ବୃଦ୍ଧ କି ଯୁବା
ଅପରୂପ ବେଶେ
ଆନନ୍ଦ-ଉଲ୍ଲାସେ
କରୁଛନ୍ତି ଲୀଳାଖେଳା |-୨

ଧୀରେ ଧୀରେ ଦେଖି -
କରିଲେ ଲାଇକି
ପାଇଲେ ଲାଇକି,
କୋମେଣ୍ଟ୍ ଦେଲେ
କୋମେଣ୍ଟ୍ ନେଲେ
ଟ୍ୟାଗ୍ ହେଲେ
ଟ୍ୟାଗ୍ କଲେ,
ବେ-ଲଗାମ୍ ଗଲେ ମାତି
କଲେ ବହୁ ଅଗ୍ରଗତି
ବସି ଗଲେ ଦିନ ରାତି,
ହରାଇଲେ କିନ୍ତୁ
ହରିଭଜନର ସ୍ମୃତି |-୩

ଆସି ଗଦ୍ଗଦେ
କହିଲେ ମୋତେ,
" ଆରେ ଧାନୀ ଶୁଣ,
କି କହିବି ଆଉ ସେ
ଅନ୍ତର୍ଜାଲର ଗୁଣ?
ତୁମେ ତ ଧାନୀ
ମୁଁ ତ ଜ୍ଞାନୀ,
ଆସ ତୁମେ ପାଶେ
ବସି ଏକା ସାଥେ
ଶିଖିବାନି ଶିଖାଇବା
ପଢିବାନି ପଢାଇବା
ଫଟୋ ଉଠାଇବା,
ଷ୍ଟେଟସ୍ ରେ ସବୁ ନେଇ
ସମର୍ପି ଦେବା -
ସେହି ମାଦକତାଭରା
ଅନ୍ତର୍ଜାଲ-ମହାକାଶେ |-୪

"ଏହାଠାରୁ ବଡ କିଛି
ନାହିଁ ଏ ସଂସାରେ,
ନାହିଁ କିଛି ଅନ୍ତର
ଫେସବୁକ୍ ଓ ସ୍ୱର୍ଗରେ:
ଏଠି ବି ମଳୟ
ସେଠି ବି ମଳୟ
ଏଠିକା ମଳୟ କିନ୍ତୁ
ଅତି ମଧୁମୟ,
ସବୁ ତ ଧର୍ମାତ୍ମା,
ସତ୍ତ୍ୱଗୁଣୀ ଆତ୍ମା,
ଏଇ ତ ସୃଷ୍ଟିର
ଗୁପ୍ତ ମହିମା,
ଏ ମନୋହାରିଣୀ
ଉନ୍ମାଦକାରିଣୀ
ସ୍ୱର୍ଗୀୟ ଧରଣୀ
ସ୍ୱର୍ଗରେ ଯାଇ
କହି ଦିଅ ଧାନୀ,
ଛାଡି ଯେ ଆସିଛି,
ଫେରିବିନି ଆଉ ପୁଣି |" -୫

ହସି ହସି ତାଙ୍କୁ
କହିଲି ସଧୀରେ,
" ହେଲା କି ଦେବର୍ଷି
ତୁମ ମତିଭ୍ରାନ୍ତି?
ଭଜ ଗୋବିନ୍ଦଂ
ଭଜ ଗୋବିନ୍ଦଂ,
ଗୋବିନ୍ଦଂ ଭଜ ମୂଢମତି | "-୬

*ଓଁ ଶାନ୍ତିଃ*

*ମଞ୍ଜୁବାଳା କବି (ଧାନୀ ସାରି)*





- ନବବର୍ଷ ନବପ୍ରଭାତରେ

- ପୁରୁଣା ତ କିଛି ନାହିଁ ସବୁ ନୂଆ ନୂଆ,
- ପୃଥ୍ୱୀ ଜଳ ଅଗ୍ନି ବାୟୁ ଆକାଶ ବି ନୂଆ ||-୧

- ସୂରୁଜ ନୂତନ ରଙ୍ଗେ ମୁରୁଜ ରଙ୍ଗାଇ
- ସ୍ନାନ ସାରି ଡାକିଲେଣି -- ଉଠ ମୋର ଭାଇ ||-୨

- ଚାଲ ମୋ ବନ୍ଧୁ, ମିତ ଯେତେ ନୂତନ ମନରେ;
- ଚେତନା ପ୍ରଦୀପ ଜାଳି ରଖିବା ଅନ୍ତରେ ||-୩

- ଏ ସାରା ସୃଷ୍ଟିରେ ନିତ୍ୟ ଓଁକାର ଝଙ୍କୃତ;
- ଚାଲ ସର୍ବେ ଗାଇବା ସେ ଅମୃତ ସଙ୍ଗୀତ ||-୪

- ମଞ୍ଜୁବାଳା କବି ୨୦୧୬୧୨୩୧(ଧାନୀ ସାଣ୍ଢି)

# ନବବଧୂର ଯାତ୍ରା

ପ୍ରାଣ ଯିବ ମୋର ପ୍ରିୟ ପାଶେ
... ତେଜି ସ୍ମୃତି ଏହି ପରଦେଶେ |

ଭାମିନୀ ଅବନୀ ମାୟାଦେଶେ
କାମିନୀ ରଜନୀ ମୋହଫାଶେ

ମୋହିନୀ ଚାନ୍ଦିନୀ ପାଶେ ଆସେ
ମାନିନୀ ମଉନୀ ମନ ହସେ |

କିନ୍ତୁ, ନବବଧୂ ପ୍ରିୟା ଭାଷେ --
ଛାଡ଼ିଦିଅ, ଯିବି ପ୍ରିୟ ପାଶେ |

... ତେଜି ସ୍ମୃତି ଏହି ପରବାସେ
=1=

ଚିତ୍ତବିମୋହିନୀ ପରବାସ
ଜନ୍ମକର୍ମଭୋଗପରବଶ,

ଯୁଗ ଯୁଗାନ୍ତରୁ ଦେଶେ ଦେଶେ
ଖୋଜି ବୁଲେ ପ୍ରାଣପ୍ରିୟ ଆଶେ |

ଅନ୍ତର ଭିତରୁ ପ୍ରିୟ ମୋର
ଆଲିଙ୍ଗନ କରେ ବାରମ୍ବାର |

ତେଣୁ ବାହୁଡ଼ିବି ତା'ର ଦେଶେ
ଛାଡ଼ି ମାୟାମୋହ ପରବାସେ |

... ତେଜି ସ୍ମୃତି ଏହି ପରଦେଶେ
ହଜି ଯିବି ସେହି ବିଶ୍ୱାୟୁସେ |
=2=

*ମଞ୍ଜୁବାଳା କବି*
୨୩ ଫେବୃଆରୀ ୨୦୧୬



# ନବବର୍ଷା ଆବାହନ

ମଞ୍ଜୁବାଳା କବି

ଅସରା ଅସରା
ମେଘର ପସରା
ଝରାଇ ଦିଅ ଗୋ
ମୁକୁତାର ବାରି ଧାର
ତୃଷାତୁର ମହୀ
ଶୁଷ୍କାକାଶ ବାୟୁ
ପାଇ ତୋ ଆଶ୍ଳେଷ
ଝରାଉ ଜୀବନ ଝର ||-୧

ତେଜି ସପ୍ତ ସିନ୍ଧୁ
ଧରି ତପ୍ତ ବିନ୍ଦୁ
ଉଡି ଗଲୁ ଯେବେ
ଶୂନ୍ୟେ ମେଲି ଛାୟା ତୋର
ଡାକିଲି ବିକଳେ
ରହିଲି ବିହ୍ୱଳେ
ଚାହିଁଲୁନି ଫେରି
ଶୀର୍ଣ୍ଣ ହେଲା କାୟା ମୋର ||-୨

ନୀଳ ନଭ ତଳେ
ଜଳଦ ମେଖଳେ
ଦାମିନୀ ଉଝଳେ
ଘନେ ଘନଘନ ଘୋର
ଗୁମୁରି ଗୁମୁରି
ଗୁରୁ ବାରି ଧରି
ତମ ପରିହରି
ଛାଡ ଅମ୍ବରର କୋଳ |-୩

ରଜୋ ଗୁଣ ଧରି
ଆସ ଅବତରି
ଦେଖାଇ ଚାତୁରୀ
ଲୋଟି ଯା ଧରଣୀ ବକ୍ଷ
ତୋର ସତ୍ତ୍ୱ ଗୁଣେ
ଅମୃତ ପ୍ଳାବନେ
ନବ ଯଉବନେ
ଧରା ହେଉ ପଲ୍ଲବିତ ||-୪

ସୂର୍ଯ୍ୟ ଚନ୍ଦ୍ର ତାରା
ତାଙ୍କ ରଶ୍ମି ଧାରା
ରଙ୍ଗର ପସରା
ଧରି ଲୁପ୍ତ ଗଗନରେ
ଖୋଲି ଦେ ତାଙ୍କର
ଆତଯାତ ପଥ
ନ ଛାଡି କୁହାଟ
ବରଷି ଯା ବରଷା ରେ |||-୫

କାନନ ମାଳିକା
କୁସୁମ କଳିକା
ବୃକ୍ଷ ଗୁଳ୍ମ ଲତା-
କୀଟ ଜୀବ ସରୀସୃପ
ପିଇ ସେହି ସୁଧା
ମେଣ୍ଟୁ ତୃଷ୍ଣା କ୍ଷୁଧା
ଆନନ୍ଦେ ବସୁଧା
ଭୁଲି ଯାଉ ତନୁ ତାପ ||-୬

# ନବପ୍ରାଣ




ପୁରାତନ ମନ ଚିତ୍ତ ଚିନ୍ତନ ଧରି ନବ ବରଷରେ,
କେମିତି ଜାଗିବ ନୂତନ ଚେତନା ଆଗାମୀ ଏ ସମ୍ବତ୍ସରେ !! -୧

ବରଷ ନୂତନ, ସେ ତ ନିଶ୍ଚେତନ, କ୍ଷଣେ କ୍ଷଣେ ପୁରାତନ,
ଜନମ ମରଣ ଚକ୍ରର ଘୂର୍ଣ୍ଣନ ଲାଗି ରହେ ଅନୁକ୍ଷଣ ||-୨

ଧନ ମାନ ଯଶ ସମୟର ବଶଃ ଅପସରି ସରି ଯାଏ;
ଦ୍ୟୂତ କ୍ରୀଡ଼ା ପରି ଶ୍ୱାସ ସବୁ ହାରି ମୃତ୍ୟୁ ଉପସ୍ଥିତ ହୁଏ |||-୩

ବରଷ ନୂତନ ଆସ ସାଥୀଗଣ  ଜଳାଅ ନୂତନ ଦୀପ
ସେ ଦିବ୍ୟ ଆଲୋକେ ଆସୁ ମର୍ତ୍ତ୍ୟଲୋକେ ନବ ପ୍ରାଣ ଅପରୂପ ||-୪

ମଞ୍ଜୁବାଳା କବି  ୨୫-୧୨-୨୦୧୬
(ଧ୍ୟାନୀ ସାକ୍ଷି)

# ନଭଫୁଲ

ହାଏ ରେ ହାଏ ଏ କି କାମ କଲି
ପୂର୍ଣ୍ଣମୀର ଚାନ୍ଦ ଛୁଇଁ ଦେଲି । ...

ଧରିଲି ଶରତ ନଭ ଫୁଲ
ଛୁଇଁଲି   ଆକାଶେ ମେଘ ମାଳ
ବଂଶୀର ଝଙ୍କାରେ ହେଲି ଉନ୍ମତ୍ତା
ଫୁଲ ସୁଗନ୍ଧେ ହେଲି ମଦମତ୍ତା ।    -1

ହାଏ ରେ ହାଏ ଏ କି କାମ କଲି
ପୂର୍ଣ୍ଣମୀର ଚାନ୍ଦ ଛୁଇଁ ଦେଲି । ...

ଇନ୍ଦ୍ରଧନୁ ରଙ୍ଗ ହାତେ ଧରି
ଖେଳିଲି ଅବିର ମନଭରି
ମହା ଅନ୍ତରୀକ୍ଷେ କଲି ଭ୍ରମଣ
ଆକାଶ ଗଙ୍ଗାରେ କଲି ସ୍ନାହାନ ।    -2

ହାଏ ରେ ହାଏ ଏ କି କାମ କଲି
ପୂର୍ଣ୍ଣମୀର ଚାନ୍ଦ ଛୁଇଁ ଦେଲି । ...

କଳ୍ପନା ରାଜ୍ୟରୁ ଆସି ଭୂତଳେ
ନିଦାଘ ଦାରୁଣ ଗ୍ରୀଷ୍ମ ଅନଳେ
ପରଦେଶ ବାସେ କରିଲି ବାସ
ରଙ୍ଗହୀନ ରଙ୍ଗ ନାହିଁ ସୁବାସ ।    -3

ହାଏ ରେ ହାଏ ଏ କି କାମ କଲି
ପୂର୍ଣ୍ଣମୀର ଚାନ୍ଦ ଛୁଇଁ ଦେଲି । ...

ମଞ୍ଜୁବାଳା କବି    ଓଁ ଶାନ୍ତି

# ନବତୃଷ୍ଣା

ନ ଯା' ନ ଯା' ନ ଯା' ଏବେ ନ ଯା' ମୋର ପ୍ରେମୀ |
ପାହିନି ଏବେ ବି ଏହି କାମିନୀ ରଜନୀ ||

ଆଶାର ଦାମିନୀ ଉଠେ  ଝଟକି ଝଟକି |
ସେ ଆଘାତେ ନବ ତୃଷ୍ଣା ଉଠୁଛି ଚମକି ||

ହୀନ ମୋ ଅଭୀପ୍ସା, ହେଲେ ଅଭିସାର ସତ |
ତୁମେ ଗଲେ, ଆତ୍ମା ମୋର ହେବ ଅନାଦୃତ ||

ତେଣୁ--  ନ ଯା' ନ ଯା' ନ ଯା' ଏବେ ନ ଯା' ମୋର ପ୍ରେମୀ |
ପାହିନି ଏବେ ବି ଏହି କାମିନୀ ରଜନୀ ||

ଲିଭିନି ଉପରେ ପୁଣି ହୀରା-ତାରା-ଫୁଲ |
ଗଗନ ତଳପେ ତାଙ୍କ ବିଦାୟର ବେଳ ||

ଦିଶୁନି ଅରୁଣ-ଶିଖା ପ୍ରକାଶ ସତ୍ୱର |
ସନ୍ଧିକ୍ଷଣେ କିମ୍ପାଁ ହୁଅ ଯିବାକୁ ଆତୁର ?

ତେଣୁ--  ନ ଯା' ନ ଯା' ନ ଯା' ଏବେ ନ ଯା' ମୋର ପ୍ରେମୀ |
ପାହିନି ଏବେ ବି ଏହି କାମିନୀ ରଜନୀ ||

ଅଜ୍ଞାନରେ ଦିଅ ଜ୍ଞାନ-ପୀୟୂଷ ପରଶ |
ସେ  ଜ୍ଞାନେ ନ ରହୁ ଅହଂକାର ଅବଶେଷ ||

ଚେତନାରେ ଦୀପ୍ତ ହେଉ ମୋହର ପରାଣ |
କାମନା ବିନାଶ ହେଉ, ହେଉ ପୁନର୍ଜନ୍ମ ||

ତେଣୁ--  ନ ଯା' ନ ଯା' ନ ଯା' ଏବେ ନ ଯା' ମୋର ପ୍ରେମୀ |
ପାହିନି ଏବେ ବି ଏହି କାମିନୀ ରଜନୀ ||

ମଞ୍ଜୁବାଳା କବି    ୧୪ ମାର୍ଚ୍ଚ ୨୦୧୬    ଓଁ ଶାନ୍ତିଃ

# ନିଛକ ମିଛ କଥା

ତୁମେ ଗ୍ରୀଷ୍ମର ଉଷ୍ମତା
ତୁମେ ଶୀତର ଶୀତଳତା
ତୁମେ କବିର କବିତା |
ଏ ସବୁ ଶୁଣି ଖୁସୁ ହୁଅ ନାହିଁ ପ୍ରିୟେ !
ଏ ସବୁ  ନିଛକ ମିଛ କଥା ||-୧

ତୁମେ ମୋ ପ୍ରାଣର ଆଧାର
ତୁମେ ମୋ ଜ୍ୟୋତି ରଜନୀର
ତୁମ ବିନା ଏ ଜୀବନ ଅସାର
ଏ ସବୁ ଶୁଣି ଗର୍ବ କରନାହିଁ ପ୍ରିୟେ
ଏ ସବୁ ନିଛକ ମିଛକଥା ||-୨

ଏହି ଭାଷା ଅହଙ୍କାର ର ପୋଷଣ
ସ୍ଥିତି ନାହିଁ ତାର ବୃଥା ଅସ୍ଫାଳନ
ଏକ ମାତ୍ର ସତ୍ୟ ଜାଣିଥାଅ ପ୍ରିୟେ
ତୁମେ ଆ ଉ ମୁଁ ସତ୍ୟ ଚିରନ୍ତନ ||-୩

ମଞ୍ଜୁବାଳା କବି ୨-୮-୨୦୧୬

# ନିଜ ଘର

ଉଠ.... ଚାଲ ମନ ନିଜ ଘର
ଯୁଗ ଯୁଗ ବୁଲି ଧରମଶାଳାରେ (୨)
ଥକିଲାଣି ପାଦ ମୋର
ଭୁଲିଗଲି ରାହା ତୋର
ଉଠ.... ଚାଲ ମନ ନିଜ ଘର । -୧

ପ୍ରେମ ବୋଲି ଯାହା ଧରିଲି ମନରେ (୨)
ଭାଙ୍ଗିଗଲା ମନ ମୋର
ମରିଚୀକା ହେଲା ସାର
ଉଠ.... ଚାଲ ମନ ନିଜ ଘର । -୨

ଆଖିରୁ ବୋହୁଛି ଲୋତକର ଧାର (୨)
ଦିଶେ ନାହିଁ ପଥ ତୋର
କେମିତି ହେବି ମୁଁ ପାର
ଉଠ.... ଚାଲ ମନ ନିଜ ଘର । -୩

ସବୁ ଏଠି ଯାତ୍ରୀ କେହି ନୁହେଁ ସାଥୀ (୨)
ଏକା ସେହି ସାଥୀ ମୋର
ମୁଁ ପରା ତା ନିଜର
ଉଠ.... ଚାଲ ମନ ନିଜ ଘର । -୪

ଜଗାଇବ ସେହି ଆଲୁଅରେ ତାର (୨)
ଭାଙ୍ଗିଯିବ ନିଦ ମୋର
ବିନ୍ଦୁ ମୁଁ, ଯିବି ସାଗର
ଉଠ.... ଚାଲ ମନ ନିଜ ଘର । -୫
ଉଠ.... ଚାଲ ମନ ନିଜ ଘର

ଓଁ ଶାନ୍ତିଃ ଧ୍ୟାନୀ ସାଦ୍ଧି (ମଞ୍ଜୁବାଳା କବି)



# ପାଇଲିନି ଖୋଜି

ନ ଥିଲା ତ କେବେ କିଛି ଆଳାପ-ସଂଳାପରେ
ରହିବିନି ତେବେ କିମ୍ପାଁ ପ୍ରସ୍ତର ମୌନରେ ?-୧

ମିଳିଗଲା କିବା କିଛି ମଳୟ ଲହରେ
ନ ରହିବି କାହିଁକି ବା ରୌଦ୍ର ଅନଳରେ ?-୨

ପାଇଲିନି ଖୋଜି କିଛି କୋଣାର୍କ ଶିଳାରେ,
ତେବେ କିମ୍ପାଁ ହଜିବିନି ଚନ୍ଦ୍ରଭାଗା ନୀରେ ?-୩

ଖୋଜି ପାଇଲିନି କିଛି ନିଦ୍ରା ବା ସ୍ୱପ୍ନରେ,
ହଜି ଯିବି ଦିନେ ନିଶ୍ଚେ ଧ୍ୟାନ ସମାଧିରେ |-୪

ସବୁ କିଛି ମିଛ ସ୍ୱପ୍ନ ଏ ଜନ୍ମ-ମୃତ୍ୟୁରେ,
ମୁକ୍ତି-ପଥ ଖୋଜି ବୁଲେ ନିରତେ ଅଶ୍ରୁରେ |-୫

ମଞ୍ଜୁବାଳା କବି      ୨୦-୭-୨୦୧୬

# ପାଣି ରେ ପାଣି

ପାଣି ରେ ପାଣି କେତେ
ଭରିଛୁ ଅମ୍ବରେ
କେତେ ପୁଣି ଭରିଅଛୁ
ସାଗର ଜଳରେ |୧

କେତେ ପୁଣି ରଖିଅଛୁ
ଜୀବର ଜଠରେ
ପାଦପ ରାଜିରେ କେତେ
କେତେ ଯେବାୟୁରେ |୨

ନାହିଁ କିଛି ରୂପ ତୋର
ମିଶୁ ସବୁ ସାଥି ରେ
ଯେ ରୂପରେ ମିଶୁ ତୁହି
ସେହି ରୂପେ ଦିଶୁ ରେ |୩
ପାଣି ରେ ପାଣି ତୁହି...

ମଞ୍ଜୁବାଳା କବି ଓଁଶାନ୍ତିଃ

# ପରଶମଣି

ସପ୍ତରଙ୍ଗ ଛବି ଯାଏ ଧୀରେ ହଜି
ସିନ୍ଦୂର ଚାନ୍ଦୁଆ ତଳେ
ନୀଳ ନାଲି ମିଶା ଅବୀର ରଙ୍ଗ
ଲାଗିଲାଣି ଆକାଶରେ |-୧

ପୂରୁବ ଦିଗରୁ ସଞ୍ଜବତୀ ଜାଳି
ରାତ୍ରୀ ଆସୁଛି ଜାଗି
ମୋ ପରାଣ ମିତ ନିଅ ଧରି ହାତ,
ଯାଉ ମୋ ନିଦ୍ରା ଭାଜି |-୨

ଏହି ରାତ୍ରି ହେଉ ଶେଷ ନିଦ୍ରା ମୋର
ତୁମ ପ୍ରେମ ଜାଗରଣେ
ଜନ୍ମ ଜନ୍ମାନ୍ତରୁ ଖୋଜୁଅଛି ଯାହା
ମିଳୁ ତାହା ଏ ଜୀବନେ |-୩

କୋଟି ଜନ୍ମ ମୋର ହେଲାଣି ଅତୀତ
ଖୋଜି ସେ ପରଶମଣି,
ହେ ପ୍ରିୟ ପ୍ରଣୟୀ! ଅତି ଗୋପନରେ
କୁହ ସେ ଅମୃତ ବାଣୀ |-୪

ଅମୃତ ପରଶେ ତୁମରି ସାନ୍ନିଧ୍ୟେ
ଘଟି ଯାଉ ମୋ ସମାଧି,
ସମାଧିର ସେହି ସହସ୍ର ଜ୍ୟୋତିରେ
ତୁଟି ଯାଉ ମୋ ଅବଧି |-୫

କାଲିର ଗଗନେ ପ୍ରଚଣ୍ଡ ଲାଲିରେ
ଉଇଁବେ ସହସ୍ର ରବି,
ଏହି ଜନ୍ମେ ହେବ ପୁନର୍ଜନ୍ମ ମୋର,
ତୁମ ହସ୍ତ ଧରି ଯିବି |-୬

ଶର୍ବରୀର ନିଦ୍ରା ତୁଟି ଯିବ ସାରା,
ଥିବ ଚିର ଜାଗରଣ,
ପରଶମଣିର ସ୍ୱର୍ଗୀୟ ସ୍ପର୍ଶରେ
ଧ୍ୟାନୀ ହେବ ସଦା ପୂର୍ଣ୍ଣ |-୭

**ଓଁ ଶାନ୍ତିଃ** *ମଞ୍ଜୁବାଳା କବି* (ଧାତ୍ରୀ ସାଭି)

# ପିଆଇ ଦିଅ ଗୋ ସୁଧା

ନ ଯାଅ ସଜନୀ
ଯାଇନି ରଜନୀ
ଢାଳିଦିଅ ପାତ୍ରେ
ମଧୁ-ର ମଧୁର ସୁଧା
ତୃଷାତୁର ପ୍ରାଣେ
ଏ ମରୁ ଜୀବନେ
ସେହି ସୁଧାପାନେ
ଶେଷ ହେଉ ମୋର କ୍ଷୁଧା |୧

ବିଲୁପ୍ତ ଅତୀତ
କିଛି ମିଥ୍ୟା ସତ
ନିରାଶାର ଅଭିସାର
ସେ ମଧୁର ପ୍ରୀତି
ଦିଏ ବଡ ଭୀତି
କ୍ଷଣେ କ୍ଷଣେ ହାହାକାର |୨

ଭୁଲିନାହିଁ କେବେ
ଭୁଲିବି ବି ନାହିଁ
ତୁମ ପରଶ ସୁବାସ
ନିର୍ଜୀବ ଏ ଘଟ
ହୁଏ ଛଟପଟ
ଲୋଡେ ତୁମରି ଆଶ୍ଳେଷ |୩

ତେଜି ମୋହମାୟା
ଧରିମୋର କାୟା
କରିଲି ତୁମକୁ ବନ୍ଧୁ
ଢାଳିଦିଅ ମଧୁ
ପିଇ ସେହି ମଧୁ
ତରିଯାଏ ଭବସିନ୍ଧୁ |

ମଞ୍ଜୁବାଳା କବି ଓଁ ଶାନ୍ତି

# ପ୍ରାଚୀ ବିଭାବସୁ

ପ୍ରାଚୀ ଗଗନରେ                    ଲୋହିତ ରଶ୍ମିରେ
        ସୁନୀଳ ସାଗରେ ସ୍ନାନ
ସ୍ନାନ ସାରି ତୁମ୍ଭେ                    ରକ୍ତବର୍ଣ୍ଣ ପାଟେ
        ଦିଅ ସର୍ବେ ଦରଶନ |                    -୧
ତୁମ ଆବାହନେ                    ଶଙ୍ଖ-ଘଣ୍ଟଧ୍ୱନି
        ଝଙ୍କାରେ ଭେଦି ଗଗନ
ମନ୍ଦିରେ  କମ୍ପିତ                    ଓଁକାର ଧ୍ୱନି,
        ତବ ନାମ ସଂକୀର୍ତ୍ତନ |                    -୨
ତୁମ୍ଭ ଆଗମନେ                    ବିହଙ୍ଗେ ମିଳନ୍ତି
        ସୁନେଲି ଆକାଶ କକ୍ଷେ,
କୈବର୍ତ୍ତ ଗମନ                    କରନ୍ତି ହରଷେ
        ନୀଳ ସାଗରର ବକ୍ଷେ |                    -୩
ପ୍ରକୃତି ଜନନୀ                    ଅଙ୍ଗେ ଅଙ୍ଗେ ପୁଣି
        ଆଣେ ଦ୍ୟୁଲୋକ ପ୍ରତୀତି
ତାହାରି ଭିତରେ                    ସବୁରି ଅନ୍ତର
        ନୃତ୍ୟ କରେ ନିତିପ୍ରତି |                    -୪
ତୁମରି ପରଶେ                    ନିତ୍ୟ ସଦ୍ୟ ସୃଷ୍ଟି
        ଚାଲିଥାଏ ଅହର୍ନିଶି,
ଦିବସ, ରଜନୀ,                    ମାସ, ଋତୁ, ବର୍ଷ,
        ଅମାବାସ୍ୟା, ପୂର୍ଣ୍ଣମସୀ |                    -୫

ଆକର୍ଷଣେ ତୁମ                    ଆକର୍ଷିତ ହୋଇ
        ସର୍ବେ କରନ୍ତି ଚଳନ,
ପୃଥ୍ୱୀ, ଗ୍ରହ, ଚନ୍ଦ୍ର                    ଯେଝା ସ୍ଥାନେ ରହି
        ସଦା କରନ୍ତି ଘୂର୍ଣ୍ଣନ |                    -୬
ଅନନ୍ତ କାଳରୁ                    ଘେନି ଦିବ୍ୟାଲୋକ,
        ଚେତନାର ବିତରଣ ,
ଯେ ଦିଏ ତୁମକୁ                    ଆଲୋକ ଭଣ୍ଡାର
        ତା ପଦେ କୋଟି ପ୍ରଣାମ |-୭

ଓଁ ଶାନ୍ତି    *ଧ୍ୟାନୀ ସାକ୍ଷି*    (ମଞ୍ଜୁବାଳା କବି)



# ପ୍ରାର୍ଥନା

ଆହେ ବିଶ୍ୱପତି   ଅଗତିର ଗତି
କରୁଛି ମିନତି
ଅଖଣ୍ଡ ପ୍ରଦୀପ ଜାଳି
ତୁମ ଶ୍ରୀ ଚରଣେ   କରି ସମର୍ପଣ
ନାହିଁ ଅଭିମାନ
ଦେଉଅଛି ପୁଷ୍ପାଞ୍ଜଳି |୧

ତୁମ୍ଭ ଦରଶନ   କରୁଅଛି କାମ୍ୟ
ତୁମରି ପଥରେ
ଜୀବନ ଅର୍ପଣ କରି
ଘେନ ମୋ ବାରତା  ଆହେ ବିଶ୍ୱକର୍ତ୍ତା
ନ କରି ଅନ୍ତର
ନିଅ ମୋତେ ହସ୍ତ ଧରି |୨

ମଞ୍ଜୁବାଳା କବି.ଓଁ ଶାନ୍ତିଃ

# ପ୍ରଥମ ମଧୁ

କିଏ କହେ ପୂର୍ଣ୍ଣ କିଏ କହେ ଶୂନ୍ୟ
କେଉଁଠି ନ ଥାଇ ସବୁଠି ଅଛ
ଶୁଣି ଶୁଣି ମୁଁ ପାଗଳ ହେଲି |

କହେ  କିଏ ପୁଣି ମନ ହୁଏ ବନ୍ଧ,
ମନ ମଣେ ମୁକ୍ତ, ମନ ଖେଳେ ଖେଳ
ଭାବି ଭାବି କେତେ ପ୍ରଳାପ କଲି || ୧ ||

ଗୀତାରେ ରହିଛ, ଭାଗବତେ ଅଛ
ଦର୍ଶନେ, ଶ୍ରୁତିରେ, ଅଛ ପୁଣି ବେଦ ଶାସ୍ତ୍ରେ,

ଏ ଜାତି ସେ ଜାତି, ଏ ଧର୍ମେ ସେ ଧର୍ମେ,
ପ୍ରକୃତିରେ ଅବା ଅଛ ପରମ୍ପରା ଶିରେ ||୨||

କେତେ ମୁଁ ଭ୍ରମିଲି, ଭ୍ରମରେ ପଡ଼ିଲି,
ସବୁଠି ଖୋଜିଲି, ପାଷାଣ ପାଲଟି
କେବେ ଅବା ବସି ଗଲି |

ଦେଖିଲି ଗ୍ରନ୍ଥରେ ପରିପ୍ଳୁତ ଶବ୍ଦ,
ତୁମର ସୁଗନ୍ଧ ତିଳେ କାହିଁ ନ ପାଇଲି ||୩||

କହିବନି ଆଉ ଖୋଜି ନାହିଁ ବୋଲି
ଦୋଷ ବି ଦେବନି, ମୁଁ ତ ନୁହେଁ ନବ-ବଧୂ |

ମୁଁ ଅତି ପ୍ରାଚୀନ ସତ୍ୟ ଚିରନ୍ତନ,
ପ୍ରେମର ସ୍ପନ୍ଦନ ମୁଁ ତୁମ ପ୍ରଥମ ମଧୁ ||୪||

ମଞ୍ଜୁବାଳା କବି    ଓଁ ଶାନ୍ତିଃ

# ପ୍ରଥମପୁରୁଷ



ସାରା ବ୍ରହ୍ମାଣ୍ଡରେ ତୁମରି ବିସ୍ତାର, ସଙ୍କୁଚିତ ହୃଦୟରେ
ଅଗଣିତ ପିଣ୍ଡେ ସୃଷ୍ଟି ଦଣ୍ଡେ ଦଣ୍ଡେ, ପୁଣି ତୁମେ ପ୍ରଳୟରେ | -୧
କୋଟି କୋଟି ଗର୍ଭେ ଏକସଙ୍ଗେ ଜନ୍ମ, ମରଣର ବିଭୀଷିକା,
ଏତେ ଦ୍ୱନ୍ଦ୍ୱ ଧରି ଚାଲିଛ କିପରି, ବନାଅ ସଭିଙ୍କୁ ବୋକା ? -୨

ଓତପ୍ରୋତ ଭାବେ, ଅଣୁବୃହତ୍ ଭବେ, କେଉଁଥିରେ ନୋହି ଯୁକ୍ତ
ମାୟାଜାଲେ ଭରି ସଭିଙ୍କୁ ଆବୋରି କୁହ -- "ହୁଅ ମାୟାମୁକ୍ତ |" -୩
ରାଜନୀତି ତୋର ଜନେ ଅଗୋଚର, ଖେଳୁଅଛୁ ଅବିରଳ,
ଗ୍ରହ-ନକ୍ଷତ୍ରକୁ ଗୋଟି ଖେଳ କରି ଗଡ଼ାଉଛୁ କାଳ କାଳ | -୪

କାଳରୁ ରହିତ, କାଳେ କାଳେ  ସ୍ଥିତ, କରୁଛ ଦ୍ୱୈତ ଶାସନ,
ଆତ୍ମଜ୍ଞାନୀମାନେ କୁହିଥା'ନ୍ତି ଜନେ -- "ଏକତ୍ୱରେ ଦରଶନ |" -୫
ପ୍ରଶ୍ୱାସରେ ଯାଇ ପ୍ରାଣକୁ ସଞ୍ଚାରି ଚଳମାନ ଅବିରତେ,
ବିଜ୍ଞାନୀର ସମ ଦେହେ ଦେଇ ଅନ୍ନ ରକତ ଗଢୁ କେମନ୍ତେ ? -୬

ବେଦ ସ୍ମୃତି ଶାସ୍ତ୍ରେ, ପରାର୍ଦ୍ଧ ସଂଖ୍ୟାରେ ଶବ୍ଦର ଭରି ଭଣ୍ଡାର
ହୋଇ ଶବ୍ଦାତୀତ ପୁଣି ଗୁଣାତୀତ ସଂସାରେ କରୁ ବିହାର | -୭
ଏଇକ୍ଷଣି ପୁଣି ହାତେ ହାତ ଧରି ଲେଖିଲୁ ତୋର ପ୍ରଚାର
ଶୁଣି ଗାଳି ଏତେ, ଭଲ ପାଉ ମୋତେ; ପ୍ରଣିପାତ ବାରମ୍ବାର | -୮

ମଞ୍ଜୁବାଳା କବି

ଓଁ ଶାନ୍ତିଃ

# ପ୍ରତିସ୍ୱର୍ଦ୍ଧା

ଅଲାଜୁକୀ ଚାନ୍ଦ ଆଉ ଏତେ ମୋତେ ଚାହାଁ ନା |
ଜାଣିଛି ମୁଁ ତୋର ଏଇ ମିଛମାୟା ଜୋଛନା ||

ନାହିଁ  କିଛି ତୋର ନିଜ ଆଲୋକର ସମ୍ଭାର,
ସବୁ ତୁ ଉଧାର ଆଣି ଭାବୁଛୁ କି ନିଜର ?

ଲୁଚି ଲୁଚି ଯାଉ ତୁହି ଅମାବାସ୍ୟା ରାତିରେ --
ଜାଣିଛି ମୁଁ ଅଭିସାର କରୁ କାହା ସାଥିରେ ||

ସରଳୀ, ତୁ ଜାଣି ନାହୁଁ ତୋର ସାଥି କାହାକୁ
ଦିବସରେ ଅପଲକେ ଚାହେଁ ଯେଉଁ ଆନକୁ ||

ସୂର୍ଯ୍ୟମୁଖୀ ନାମ ତା'ର, ସିଏ କାଳେ ସୁନ୍ଦରୀ,
ସୂର୍ଯ୍ୟକୁ ଦେଖି ଛାତି ଫୁଲି ଉଠେ ତାହାରି ||

ସୂର୍ଯ୍ୟମୁଖୀ, ଚାନ୍ଦ ଶୁଣ ! ତୁମେ ଦୁହେଁ କାଲିର,
ମୁଁ କିନ୍ତୁ ତା' ଚିରସାଥୀ, ସୀମାତୀତ କାଳର ||

ତେଣୁ ଆଲୋ ଚାନ୍ଦ ! ଏତେ ଫୁଲେଇ ତୁ ହୁଅ  ନା !
ସେ ଫୁଲକୁ ଚାହିଁ ହସ, ଆଉ ମୋତେ ଚାହାଁ ନା ||




୨୬-୦୨-୨୦୧୬  [ଓଁ ଶାନ୍ତିଃ]

# ପ୍ରେମପିପାସା

ପ୍ରେମ ତ ନୁହଇ    ଅପବାଦ କେବେ,
ନୁହେଁ ସେ ବିଫଳ ଭାଷା |
ପ୍ରେମ ଅଟେ ସେହି    ଚରମ ଶିଖର,
ପ୍ରାଣର ଆଦି ପିପାସା ||-୧-||

ପ୍ରେମ ନୁହେଁ ପୁଣି    ଗ୍ରନ୍ଥର ଗାର
ଅବା ସନ୍ଦେଶ ଲିଖନ |
ସେ ତ ଅଟେ ଦିବ୍ୟ;    ନୟନେ ନୟନ
ମିଳନ ଅଭିଲେଖନ ||-୨-||

ପ୍ରେମ ଏକା ସତ୍ୟ,    ଶିବ ଓ ସୁନ୍ଦର,
ଏକାନ୍ତତାରେ ଏକତ୍ୱ |
ପ୍ରେମ ଅଟେ ଭକ୍ତି,    ପ୍ରେମ ଅଟେ ମୁକ୍ତି,
ସେ ଅଟେ ନିର୍ବାଣ ପଥ ||-୩-||

ଦ୍ୱନ୍ଦ୍ୱରୁ ବିରତ    ପ୍ରେମର ମହତ୍ତ୍ୱ,,
ନିର୍ଭର ନୁହେଁ କା' ପ୍ରତି |
ଥରେ ଯଦି ଜାଗେ    କା' ହୃଦ ଭିତରେ,
ହୁଏ ତାର ଅମୃତୃପ୍ତି ||-୪-||

ଖୋଜି ବୁଲି ତାକୁ    କେହି ପାଇ ନାହିଁ,
ଭାଗ୍ୟେ ଥିଲେ ମିଳେ ପ୍ରେମ |
ପ୍ରେମଧାରା ବହେ    ସୁମନ ସୁବାସେ,
ଏକରସ ହୁଏ ମନ ||-୫-||

ପ୍ରେମ ପରିଧାନ,    ପ୍ରେମ ସମର୍ପଣ,
ପ୍ରେମ ଜାଗରଣ ଶକ୍ତି |
ପ୍ରେମରେ ନିହିତ    ଏ ସାରା ଅସ୍ତିତ୍ୱ
ସୃଜନର କଳ୍ପ-ଗୀତି ||-୬-||

ନାହିଁ ଆବାହନ    କି ବା ସଂସ୍ଥାପନ
ନାହିଁ ତହିଁ ମଧ୍ୟାନ୍ତର |
ଏକତାଳ ଏକ-    ରସରେ କ୍ଷରିତ
ପ୍ରବହମାନ ସେ ଧାର ||-୭-||

ନାହିଁ ତାର ଭାଷା    ଅବା ପରିଭାଷା,
ଏଠି କି ଅନ୍ୟଠି ସ୍ଥିତି |
ଈଶ୍ୱର-ପ୍ରସାଦେ,    ସର୍ବସ୍ୱୀକାରରେ
ସର୍ବ ଦିଗେ ତା ସଂସ୍ଥିତି ||-୮-||

ମଞ୍ଜୁବାଳା କବି    ମେ଼ ୨୦୧୬

# ମନେପଡେ

ଗ୍ରୀଷ୍ମ ଆସେ ମନେପଡେ ଦୀନ ନିର୍ଧନତା
ବର୍ଷା ଆସେ ମନେପଡେ ଅର୍ଥ ସ୍ୱଛଳତା |୧ ୧

ସାଜସଜା ମନେ ପଡେ ଶରତ ଋତୁରେ
ପୂଜାର୍ଚ୍ଚନା ମନେ ପଡେ ହେମନ୍ତ ଋତୁରେ |୨

ଶୀତ ଦିନେ ମନେ ପଡେ ସାଥୀ  -ଆଲିଙ୍ଗନ
ଆସେନା ବସନ୍ତ- ସାଥୀ ଦିଏ ଅନ୍ୟ ଠାରେ ମନ |୨

ମଞ୍ଜୁବାଳା କବି.ଓଁଶାନ୍ତିଃ

# ପ୍ରୀତି-କଣ

ଆଶାର ପାଖୁଡ଼ି
ନ ଯା ଝଡ଼ି ଝଡ଼ି
ରହି ଯା ଦି' ଘଡ଼ି
ଯାଇନି ଆଲୁଅ ହଜି |
ମୁହଁ ସଞ୍ଜ ବେଳ
ସେ ରକ୍ତିମ ଖେଳ
କରୁଛି ଉଦ୍‌ବେଳ ଉଦ୍ବେଳ
ଯିବି ମୁଁ ପୀରତି ଖୋଜି ||-୧-

ଶ୍ୱାସର ଚଳନ
କଲାଣି ଦଂଶନ
କାୟା ଅବସନ୍ନ
ଖୋଜିବି ବା କେତେ ଦିନ |
ପବନ ବେଗ
ଗଗନର ମେଘ
ଜୀବନ ବିରାଗ
କେ ରୋକି ପାରିବ କ୍ଷଣ ||-୨-

ମୃଦୁ ହାସ୍ୟ-ଲାସ୍ୟେ
ଶ୍ୱେତ, ସ୍ବର୍ଣ୍ଣ ପୁଷ୍ପ
ପ୍ରୀତିର ସୁବାସ
ବିତରନ୍ତି ପବନରେ |
ଦେଖି ତାଙ୍କ ଲୟ
ତ୍ୟାଗ ଓ ଅଭୟ
ଲାଗୁଛି ଅଥୟ,
ଉଡ଼ନ୍ତି କି ଗଗନରେ ||-୩-

ପାଶେ ଥାଅ ଆଶା,
ଭାବିଛି -- ସହସା
ଶ୍ୱାସର ସୁବାସେ
ରହିବି ମୁଁ କିଛି କ୍ଷଣ |
ପବନରେ ମିଶି
ଗଗନେ ବିକଶି
ଜଳରେ ବରଷି
ଲୁଟାଇବି ପ୍ରୀତି-କଣ ||-୪-

ମଞ୍ଜୁବାଳା କବି        ୨୫ ମେଁ ୨୦୧୬

# ପୃଥିବୀର ଉକ୍ତି

ପରମ ଓଁକାରେ ଗଢିଅଛ ମୋତେ, ଆଦ୍ୟ-ପ୍ରାନ୍ତ-ଲୀଳାଭୂମି
ସ୍ଥାବରଜଙ୍ଗମ ସଭିଙ୍କୁ କୋଳାଇ ଉଠିଅଛି ନଭ ଚୁମି |     -୧

ବେଦ, ଶ୍ରୁତି ଧ୍ୱନି ମୋହରି ବୁକୁରେ ଉଚ୍ଚାରି ଶତ ତରଙ୍ଗେ
ଋଷି, ମହାଋଷି, ଧ୍ୟାନୀ, ମହାଜ୍ଞାନୀ ମିଶନ୍ତି ବ୍ରହ୍ମଙ୍କ ସଙ୍ଗେ |  -୨

ବାଲିରେଣୁଠାରୁ ତୁଙ୍ଗ ଶିଖର, ଆଗ୍ନେୟଗିରି, ସାଗର,
କେତେ ନଦୀ କେତେ ବନ ମରୁଭୂମି, ସଭିଙ୍କର ମୁଁ ଆଧାର |-୩

ମୋହରି ବୁକୁରେ ସୃଷ୍ଟି,  ବିନାଶ ଗଢୁଅଛ ନିତି ନିତି,
ଭେଦରହିତ ମୁଁ କୋଳେ ଧରି ସବୁ ତୁମକୁ କରେ ପ୍ରଣତି |   -୪

ସର୍ବଂସହା କରି ଗଢିଅଛ ମୋତେ ହେ ପ୍ରିୟ ପରମପିତା,
ଭାଷା ନାହିଁ ଯେଣୁ, ସ୍ତବ୍ଧ ମୌନେ ଜଣାଉଛି କୃତଜ୍ଞତା |     -୫

*ଓଁ ଶାନ୍ତିଃ   ଧ୍ୟାନୀ ସାଧ୍ୱି (ମଞ୍ଜୁବାଳା କବି)*

# ଫୁଙ୍ଗୁଳା ଆକାଶ

ତପନ ପ୍ରକୋପେ ଯେତେ ଜଳ ବିନ୍ଦୁ
ଉଡିଗଲେ ନୀଳାମ୍ବରେ
ଅମ୍ବୁଧାରା ହୋଇ ଲୋଟିଗଲେ ପୁଣି
ଶୁଷ୍କ ଦେଖି ଧରଣୀରେ |୧

ସ୍ନାହାନ ଶିଙ୍ଗାରେ ସାଜିଲା ଧରିତ୍ରୀ
ନବୀନ କୁମାରୀବଧୂ
ପୂର୍ଣ୍ଣହେଲା ଜଳେ ଯେତେ କ୍ଷତ ଗର୍ତ୍ତ
ପୁରିଲା ସରିତ ସିନ୍ଧୁ |୨

ମେଘ କାଢିନେଲା ତା ବସ୍ତ୍ର ଢାଙ୍କୁଣି
ଆକାଶ ଫୁଙ୍ଗୁଳା କରି
ଆହା, କି ସୁନ୍ଦର ନଭ- ନଗ୍ନ- ବେଶ
ନୀଳ ମହାଗର୍ଭ ପରି |୩

ଶ୍ବେତ ଶୁଭ୍ର ବେଶେ ଶ୍ୟାମଳ ସୁବେଶେ
ଧରା କହେ ନଭେ ଦେଖି--
'' ତୁମ ପାଇଁ ପ୍ରିୟ ଏହି ମୋ ଶିଙ୍ଗାର
ଅନ୍ତରେ ଦେଖ ନିରେଖି |୪

ଲେଉଟି ବ ପୁଣି ଶରଦ ଚାନ୍ଦିନୀ
ଲୋଟିବେ ମୋହରି ବକ୍ଷ
ବରଷାରେ ଜାତ ଯେତେ ନବ କୀଟ
ଉଡିବେ ମେଲାଇ ପକ୍ଷ |୫

ଧରିବି ତେବେ ମୁଁ ଶରଦ ଚନ୍ଦ୍ରିକା
ତୁମରି ପରଶ ଆଶେ
ସେ ସୁକ୍ଷ୍ମ ଝରରେ ଝରି ଝରି ଆସି
ନିଶୀଥେ ବସିବ ପାଶେ '' |୬

ମଞ୍ଜୁବାଳା କବି ଓଁ ଶାନ୍ତିଃ

# ରାତ୍ରୀ ଭାବନା

ଗଭୀର ନିଶୀଥେ ଲତା ବନସ୍ପତି
ହୁଅନ୍ତି ସର୍ବେ ବର୍ଦ୍ଧିତ
ପ୍ରେମ ବର୍ତ୍ତାଳାପେ ଆଲିଙ୍ଗନ କରି
ବୃକ୍ଷଲତା ଆନନ୍ଦିତ |-୧

ଶ୍ୱେତ ସୁଗନ୍ଧିତ ପତ୍ରପୁଷ୍ପରାଜି
ରାତ୍ରୀକାଳେ ପ୍ରସ୍ଫୁଟିତ
ରମ୍ୟ କ୍ଷୁଦ୍ରଲତା ବୃଦ୍ଧି ହେବା ଆଶେ
ହୁଅନ୍ତି ବୃକ୍ଷେ ଆଶ୍ରିତ |-୨

ସୀମନ୍ତିନୀଗଣ ସମାବେଶ ଲାଗି
ସୌନ୍ଦର୍ଯ୍ୟରେ ଅଭିଭୂତା
ରାତ୍ରି ଅଭିଶପ୍ତା ଚକୋରୀ ସୁନ୍ଦରୀ
କିନ୍ତୁ ବିରହେ କ୍ରନ୍ଦିତା |-୩

ବିଭାବରୀ ବକ୍ଷେ ଅମୃତ ସ୍ପନ୍ଦନେ
ସ୍ପନ୍ଦିତ ସାରା ଜଗତ
ତପସ୍ୱୀ ବିଜ୍ଞାନୀ ପୁଣି ମହାଜ୍ଞାନୀ
ଶୁଣନ୍ତି ହୋଇ କୃତାର୍ଥ |-୪

ରାତ୍ରୀ ଆଗୋ ତୁମେ କେତେ ଯେ ସୌମ୍ୟା
ଆଲୋକକୁ କର ଧନ୍ୟା
ତୁମେ ନ ଥିଲେ କି ଆଲୋକର ଶୋଭା
କରନ୍ତା କେହି ବର୍ଣ୍ଣନା ?-୫

*ଓଁ ଶାନ୍ତିଃ ଧାନୀ ସାକ୍ଷି (ମଞ୍ଜୁବାଳା କର)*



# ରକ୍ତ-କରବୀର

ଝିପି ଝିପି ବରଷା ରାତିରେ
ରହି ରହି ଝଟକେ ଦାମିନୀ;
ତିନି ଘଡ଼ି ନିଶା ଅନ୍ଧକାରେ
ମନେ ପଡ଼େ ମୋ ପ୍ରାଣ ସଙ୍ଗିନୀ ||-୧

କେତେ ଥର କରିଛି ବିନତି:
"ଡର ଲାଗେ ଏକା ଅନ୍ଧକାରେ,"
ଶୁଭୁ ନାହିଁ ଆଜି ତାର ଅଳି,
ଶୋଇଲା କି ଅଭିମାନ ଭରେ ||-୨

କେତେ ଦିନ ଗଲାଣି ତ ବିତି,
କହିନି ସେ ମନ ଖୋଲି କଥା;
ଯାଉଛି ମୁଁ ଏବେ ତାର ପାଶେ,
ଶୁଣି ଶୁଣାଇବି ପ୍ରୀତି ଗାଥା ||-୩

ପ୍ରିୟ ତାର ରକ୍ତ-କରବୀର
ଫୁଲ ଫୁଟି ମଝି ଅଗଣାରେ
ବିଜୁଳିରେ ଦିଶୁଛି ଝଟକି,
ମୋତେ କି ବା ଡାକୁଛି ଅଧୀରେ ||-୪

ଫୁଲ ପାଶେ ଗଲି ଭିଜି ଭିଜି,
ଥମି ଗଲା ବରଷା ବିଜୁଳି;
ଜହ୍ନ ଆସି ତାର ଉଆସରୁ
ଇସାରାରେ ଲୁହ ଦେଲା ଡାଳି ||-୫

ଚମକି ମୁଁ ଗଲି ଭିତରକୁ;
ଶୋଇଅଛି ମୋ ପ୍ରାଣସଙ୍ଗିନୀ;
ଶରୀର ତା ରକ୍ତ କରବୀରେ
ସାଜି ଦିଶେ ସଦ୍ୟ ସୀମନ୍ତିନୀ ||-୬

ହାତ ଧରି ଡାକିଲା ବେଳକୁ
ଖସି ଗଲା ହାତୁ ହାତ ତାର;
ଡର ଭୟ ନାହିଁ ଆଜି ମୁଖେ;
ଫୁଲ, ମୁଖ ଦୁହେଁ ନିର୍ବିକାର ||-୭

ମଞ୍ଜୁବାଳା କବି ୨୦୧୨-୨୦୧୬

# ସହର ଜୀବନର ଦିନଟିଏ -

ଏଠି ଶୀତଦିନେ ଛାତପଙ୍ଖା ପୂରା ଦମ୍‌ରେ ବୁଲେ | ତା ନହେଲେ ରାତିରେ ନିଦ ହେବନି; ଏକ୍ସ୍‌ପୋର୍ଟ୍ କ୍ୱାଲିଟି ମଶା ଇଞ୍ଜେକ୍‌ସନ୍‌ରେ ଜାଗର ଜାଳିବାକୁ ପଡ଼ିବ | ମଶାଙ୍କର ପେଟ ନାହିଁ, ବ୍ଲଡ୍‌ବେଙ୍କ୍ ବୋତଲ ଗୋଟେ ଲେଖା | ରକ୍ତ ନେବାରେ ସହଯୋଗ ନ କଲେ କାନ ପାଖରେ ମହ୍ଲାର ଶୁଣେଇବେ, ବଂଶୀ ବଜେଇବେ | ଆକାରରେ ଚଢ଼େଇ, ଡିଜାଇନ୍ ଦେଖିଲେ ଫାଇଟାର୍ ଉଡ଼ାଜାହାଜ କି ମହାକଶଯାନର ଭ୍ରମ ହେବ; ଡର ମାଡ଼ିବ | ବାକି ରହିଲା ଖରା ଦିନ, ବିନା ପଙ୍ଖାରେ ଶୋଇବା ଅଭ୍ୟାସ ଥିଲେ ଭଲ; କାରଣ ଲାଇନ୍ ତ ନ ଥିବ ନା |

ବଡ଼ି ଭୋର୍‌ରୁ ଉଠିବାକୁ ପଡ଼େ | ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ ନୁହଁ, ଶୋଇ ହୁଏ ନାହିଁ; ଲାଇନ୍‌ବାସ୍ ସବୁ ଯୁଦ୍ଧଯାତ୍ରା କରନ୍ତି, ହର୍ଣ୍ଣ୍ ବାଜୁଥିବ ଯେମିତି କି ରଣଭେରୀ | କିଏ ହର୍ଣ୍ଣ୍ ବଜେଇଲା, କାହାକୁ ଓ କାହିଁକି, ବ୍ରହ୍ମାଙ୍କୁ ଅଗୋଚର | ସାଡ୍ଡେନ ବ୍ରେକ୍ ବି ପ୍ରବଳ; ଯାତ୍ରୀ ମଲେ ଇନ୍‌ସୁରେନ୍‌ସ୍ ଅଛି | ସରକାର ବି ଦେବେ ଲକ୍ଷ ଲକ୍ଷ |

ସକାଳୁ ଗାଧୋଇବା ଅଧିକାଂଶ ଦିନ ହୁଏ ନାହିଁ | ପାଣି ସପ୍ଲାଇ ଥିଲେ ତ ! ତେଣୁ ଏବେ ମର୍ଣ୍ଣିଂ ୱାକ୍ | ପର ବାଡ଼ିରୁ ଫୁଲ ଚୋରି ଦୃଶ୍ୟ ଦେଖିବା ସାଧାରଣ କଥା | ଆଉ ଦୃଶ୍ୟ ହେବେ କିଛି ହାଫ୍ ପେଣ୍ଟ୍ ପିନ୍ଧା ବୀର, ହାତରେ ଲାଠି ଧରି ଭୁକିଲା କୁକୁରଙ୍କୁ ଘଉଡ଼େଇ ଚାଲିଥିବେ ଏ ଡାଇବେଟିସ୍ କବଳିତ ସୈନିକ ଦଳ ହଜିଲା ଯୌବନର ସନ୍ଧାନରେ | ଡାଇବେଟିସ୍ ନ ହେବା ଯାକେ ଯୌବନର ଯତ୍ନ ନେଇ ନଥିଲେ, ଚାଲିଗଲା | ଆଉ କିଛି ବାଇକ୍‌ଧାରୀ ଅନୁସରଣ କରୁଥିବେ ମହିଳା ପଦଯାତ୍ରୀଙ୍କୁ, କାରଣ ତାଙ୍କ ବେକରେ କେବେ କେମିତି ଅଳଙ୍କାର ରହି ଯାଇ ଥାଏ, ଶୋଇଲା ବେଳୁ ଖୋଲିବାକୁ ମନେ ପଡ଼େ ନାହିଁ | ସମସ୍ତଙ୍କର ରୋଜଗାର କରିବା ଅଧିକାର ଅଛି; ପୂରା ଗଣତନ୍ତ୍ର |

ଏବେ ପରିବା-ବିକ୍ରେତା ଆସିଲେଣି, କ୍ରେତା ବି | ଧନୀ ଗରିବ ସବୁ | ଅଢ଼େଇଶ ବାଇଗଣ ଦଶ ଟଙ୍କା; କିଲୋ ତିରିଶ | ଯିଏ ବେଶି କିଣି ନ ପାରିବ, ଗରିବଙ୍କୁ ଅଧିକା ରେଟ୍ ପଇସାବାଲା କମ୍‌ରେ ନେବେ, ସେ ଭାର ପଡ଼ିବ ଗରିବଙ୍କ ଉପରେ | ବଣି ପୋଷିବାକୁ ଝିଣ୍ଟିକା ମାରଣ ଏହାଙ୍କ ନୀତି | କିନ୍ତୁ କୋମ୍ମାର୍ସିଏଲ୍ ହସଟିଏ ହସ ସବୁ ବ୍ୟବସାୟୀଙ୍କ ମୁହଁରେ, ନଚେତ୍ ବେପାର ଠପ୍ |

ଆଜି ଏତିକି ଥାଉ, ଅବଶିଷ୍ଟ ପରେ | ଫେସ୍‌ବୁକ୍ ପାଇଁ ଲେଖିବାକୁ ଅଫିସ୍ କାମ ପୂରା ତ ଫାଙ୍କି ହେବନି ନାଁ | ଟାଇମ୍‌ରେ ହାଜିରାଟା ପକେଇ ଦିଏ | ତେଣିକି ସୁପରଖେଳାରେ ଭାଇ: ଦେହ ଭଲ ନାହିଁ, ଖାଇନି, ଟିକିଏ ଟିଫିନ୍‌ରୁ ଆସେ |

# ସନ୍ଧି କ୍ଷଣ

ସୂର୍ଯ୍ୟ ଅସ୍ତେ ଦିବା ସାଥେ ରାତ୍ରୀର ମିଳନ
ଦେଇ ଯା'ନ୍ତି ବିଭାବସୁ ସ୍ୱର୍ଣ୍ଣାଭ କିରଣ ||-୧

ପାରାବାରେ ଶତ ଶତ ତରଙ୍ଗ ଉତ୍ଥାନ
ନୀଳ ଢେଉ ମଧ୍ୟେ ନାଚେ ପ୍ରବାଳ କିରଣ ||-୨

ଦିଗ୍ବଳୟେ ବାରିଧିର ଅମ୍ବରେ ମିଳନ
ଧୀରେ ଧୀରେ ରାତ୍ରୀ ଢାଙ୍କେ କଳା ଉପରାଣ |-୩

ଶ୍ରୀ ମନ୍ଦିରୁ ଭାସି ଆସେ ଆରତୀ ଜଣାଣ
ଉଲ୍ଲାସେ କରନ୍ତି ଭକ୍ତ ସାନ୍ଧ୍ୟ ପୂଜାର୍ପଣ |-୪

ଜ୍ୟୋସ୍ନାକାଶେ ନକ୍ଷତ୍ରଙ୍କ ଆଲୋକ ବିପଣୀ
ବଖାଣନ୍ତି ତାଙ୍କ ଜନ୍ମ ଜନ୍ମର  କାହାଣୀ |-୫

ଅନ୍ତର ଆକାଶେ ସେହି ସନ୍ଧି ସମାଗମ
ଯିଏ ଅନୁଭବେ କେବେ ହୁଏ ନାହିଁ କ୍ଷୁର୍ଣ୍ଣ  |-୬

ଦିବାଲୋକ ତିରୋହିତେ ତିମିର ଆଗମ
କ୍ଷଣିକରେ ଘଟି ଯାଏ ସେ ସନ୍ଧି ମିଳନ |-୭

ସର୍ବ କର୍ମ ତେଜି ଜାଗ ନବ ବନ୍ଧୁଗଣ
ସେହି କ୍ଷଣେ ସ୍ଥିତ ହୋଇ କର ମଧୁପାନ |-୮

କ୍ଷଣେ କ୍ଷଣେ ଜୀବ ଆୟୁ ଯାଏ ସରି ସରି
ଜୀବନରେ ଥାଇ ଆସ ହେବା ଭବୁ ପାରି |-୯

ମଞ୍ଜୁବାଳା କବି ୦୬-୦୮-୨୦୧୬

# ସଙ୍ଗୀତ ସୁଧା

ଅବିରତ ଝରେ ସଙ୍ଗୀତ ମୂର୍ଚ୍ଛନା
ଏଇ ସାରା ବ୍ରହ୍ମାଣ୍ଡରେ
ଗଗନ ପବନ କରେ ଆଲୋଡନ
ମୃଦୁ ମନ୍ଦ ତାଳ ସୁରେ |୧

ଅଲୋକ ରଶ୍ମିର ଝିନ ପତନିରୁ
ଝରି ଝରି ଯାଏ ତାନ
ପାଦପରାଜିର ଶ୍ୟାମଳ ପତରେ
ଶ୍ୟାମ ସଙ୍ଗେ ଗାଏ ଶ୍ୟାମ |୨

ନାଦେ ନଦୀ ଗାଏ ଗୁଣୁ ଗୁଣୁ ଗୀତ
ସପ୍ତ ତାଳେ ସପ୍ତ ସୁରେ
ଭୈଅବୀ ଭୈରବେ ଆଶାବରୀ ରାଗେ,
କେବେ କଳାବତୀ ଝରେ |୩

ଅଳଙ୍କାରେ ତାନେ ରୁଣୁ ଝୁଣୁ ଗାନ
ମଣିରତ୍ନମାଳା ଭରେ
ଗନ୍ଧର୍ବ ଶୃଙ୍ଗାରେ ରମଣୀ ଶିଙ୍ଗାରେ
ରାଗ-ରଙ୍ଗ-ରାସ ଝରେ |୪

ଏ ସାରା ଅସ୍ତିତ୍ୱେ ସଙ୍ଗୀତର ଧାରା
ନିନାଦିତ ନିରନ୍ତରେ
ସପ୍ତସୁର ଧାରା ଅନ୍ତରେ ଅନ୍ତରେ
ପ୍ରୀତି-ସୁଧା-ଗୀତି ଝରେ |୫

ମଞ୍ଜୁବାଳା କବି ୦୩-୦୮-୨୦୧୬

# ସଂଗୀତାଲୋକ

ନବଯୁଗେ ନବକବି
ଗାଅ ନବ ଗୀତ,
ଶ୍ରବଣେ ବିଷାଦ କଟୁ,
ହୃଷ୍ଟ ହେଉ ଚିତ୍ତ ||୧|

ଖୋଲ ନାହିଁ ସଂଗୀତର
ଝିନ୍ନ ଉପରାଣ,
ଅଳଂକାର ଭରି ଗାଅ,
ଖେଳୁ ଗୁଞ୍ଜରଣ ||୨|

ଝରି ଯାଉ ଧରାରେ ତା'
ରୁଣୁ ଝୁଣୁ ତାନ,
ପଲ୍ଲବି ଉଠୁ ଏ ସାରା
ବନାନୀ କାନନ ||୩||

କର୍ମ ଦୁଃଖ ହଜି ଯାଉ
ଗୁଣୁ ଗୁଣୁ ଗାନେ,
ନବ ଜାଗରଣ ଖେଳୁ
ଗଗନେ ପବନେ ||୪||

ସେ ଗୀତେ ଶିହରି ଫୁଟୁ
ଲତିକା କଳିକା,
ଅଳସ ତେଜି ଉଠନ୍ତୁ
ନବୀନା ବାଳିକା ||୫||

ନବଯୁଗେ ନବ କବି
ଗାଅ ନବ ଗୀତ,
ଧରା ପୃଷ୍ଠେ ଖସି ଆସୁ
ଆର୍ଯ୍ୟଯୁଗ ସତ୍ୟ ||୬||

ଗାଅ ନାହିଁ କବି ଆଉ
ଉନ୍ମାଦନା ଗୀତ,
ଝରାଅ ସର୍ବ-ଅନ୍ତରେ
ଉଦ୍ଦୀପନା ସ୍ରୋତ ||୭||

ଛନ୍ଦେ ବାନ୍ଧି ଗାଅ କବି
ରାଗ ତାଳ ସୁରେ,
ମିଶି ଯାଉ ସେହି ସୁର
ସାଗରେ ଅମ୍ବରେ ||୮||

ବରଷାର ଧାରା ଝରୁ
ଶୁଷ୍କ ଭୂମି ପରେ,
ଆଲୋକର ଶିଖା ଜଳୁ
ଅନ୍ତର ଦୀପରେ ||୯||

ଓଁକାର ମଧ୍ୟରୁ ସୃଷ୍ଟ
ଏ ସାରା ସଂଗୀତ;
ଗାଅ ଆଜି କବି ସେହି
ସଂଗୀତ ଶାଶ୍ୱତ ||୧୦||

ଓଁ ଶାନ୍ତିଃ
ମଞ୍ଜୁବାଳା କବି
୨୫-୭-୨୦୧୬

# ସତ୍ୟାଶ୍ରିତା ନଦୀ

ସାଗର-ଅବଳା ପ୍ରକୃତି-ଚଞ୍ଚଳା
ତଟିନୀ ଧରଣୀ ପରେ,
ସଦା ଗତିଶୀଳା, ଚିର କର୍ମଶୀଳା,
ଅବିରତ ନୀର ଝରେ |-୧

ଧାର୍ମିକ, ପାପୀ, ବିଦୁଷ, ମୂର୍ଖ,
ଦେହରେ ବା ଦେହାନ୍ତରେ
"ସର୍ବସ୍ୱୀକାର"ରେ ଗ୍ରହଣ କରେ ସେ,
ଅସୂୟା ନାହିଁ କାହାରେ |-୨

ବନ୍ଧନହୀନ, ନିତ୍ୟ ପ୍ରସନ୍ନ,
"ଅପ୍ରତିଗ୍ରହ"ର ଚିହ୍ନ,
ଦିଏ ଅବିଚ୍ଛିନ୍ନ, ନୁହେଁ ଅବସନ୍ନ,
ଜାଣି - ବିଧାତା କାରଣ |-୩

ସ୍ଥୂଳକୁ ବୁଡାଏ, ସୂକ୍ଷ୍ମକୁ ଉଠାଏ,
ଅଭିମାନ କରେ ଚୂର୍ଣ୍ଣ,
"ସମର୍ପଣ" ଭାବ ସର୍ଭିଙ୍କୁ ଶିଖାଏ,
ଯୁଗେଯୁଗେ ଭେଦଶୂନ୍ୟ |-୪

ଓଁ ଶାନ୍ତିଃ

*ମଞ୍ଜୁବାଳା କବି* (ଧ୍ୟାନୀ ସାଧ୍ୱି)

# ସତ୍ୟୋକ୍ତି

କରେ କର ଧରି
ନିଅ ମୋତେ ଟେକି
ସମୟ ହେଉଚି ଗତ
ଗଲେ ଥରେ ଚାଲି
ଆସିବିନି ଫେରି
କାଳର ଏ ମହାସ୍ରୋତ |୧

ମିଶିବା ଆଗରୁ
ସେ ଭଉଁରୀ ସ୍ରୋତେ
କହି ଯାଅ କିଛି କଥା
କିଛି ତୁମେ ଶୁଣ
କିଛି ମୁଁ ଶୁଣେ
ପାରି ହେଉ ଏହି ରାସ୍ତା |୨

ଆସେ ଯିଏ ଏକା
ଯାଏ ସିଏ ଏକା
ଚିରନ୍ତନ ସତ୍ୟ ଉକ୍ତି
ଆଜି ସେହି ସତ୍ୟ
ଲାଗେ ବଡ ତିକ୍ତ
ହୃଦୟରେ ଦିଏ ଭୀତି |୩

ତେଣୁ ଅଗୋ ସାଥୀ....

ଏମିତି ନ ହେଉ
ଚାଲି ଯାଉ ପ୍ରାଣ
ସାଜି ପ୍ରସ୍ତର ମୂରତୀ
କର ତେଣୁ ଧରି ନିଅ
ମୋତେ ଟେକି
ରାତି ଲାଗେ ବଡ ଭୀତି.|୪

ମଞ୍ଜୁବାଳାକବି ଓଁ ଶାନ୍ତିଃ

# ସେହି ଏକ ଶବ୍ଦ

ଗଭୀର ନିଶୀଥେ ନିଃଶବଦେ ଆସ
ପ୍ରେମ ସୁଧାରସ ଧରି
ଅଧା ଅଧା ସୁପ୍ତ ଅଧା ଜାଗ୍ରତରେ
ଯାଅ ତୁମେ ନିତି ଫେରି | ୧

ଥାଅ ତୁମେ ଦୂରେ ଆସନାହିଁ ପାଶେ,
ଉନ୍ମାଦନା ଭରି ମନେ
ଗାଏ ତୁମ ଗୀତ ହୁଏ ଆନନ୍ଦିତ
ଉଲ୍ଲାସ ଭରି ମୋ ପ୍ରାଣେ | ୨



ବାୟୁର ତରଙ୍ଗ ତୁମର ପରଶ
ଆଣି ଦେଇଯାଏ ମୋତେ
ଭାସିଯାଏ କାନେ ସୁମଧୁର ତାନ
ସେ ସୁଖ ନାହିଁ ଜଗତେ | ୩

ନବପୁଷ୍ପକଳି କୋକିଳର ଅଳି
ତୋଳନ୍ତି ତୁମର ସ୍ମୃତି
ଶୀତଳ ଚନ୍ଦ୍ରମା ନଳିନୀର ଦଳ
ଗାଆନ୍ତି ତୁମର ଗୀତି | ୪

ଏପରି ଗୋଟିଏ ନକ୍ଷତ୍ର ଦେଖାଇ
କହିଦିଅ ଥରେ ମୋତେ
ଶାନ୍ତ ନିଶୀଥେ ଦେଖିବି ତୁମକୁ
ସେଇ ନକ୍ଷତ୍ରର ସାଥେ | ୫

ଲୋଡା ନାହିଁ ମୋର ତୁମର ସାନ୍ନିଧ
ସଦା ଥାଅ ମନେ ପ୍ରାଣେ
ପାଶେ ପାଇବାକୁ ନୁହେଁ ମୁଁ ଆତୁର
ଥାଅ ସଦା ଅନ୍ତର୍ମନେ | ୬

ଏପରି ଗୋଟିଏ ଶବ୍ଦ ଲେଖି କୁହ
ଏହି ଶବ୍ଦ ଅଟେ ମୋର
ଉଚ୍ଚାର କରିବି ସେହି ଏକା ଶବ୍ଦ
ଆଉ ସବୁ ହେବ ପର | ୭

ଓଁ ଶାନ୍ତି *ଧ୍ୟାନୀ ସାକ୍ଷି* (ମଞ୍ଜୁବାଳା କବି)

# ଶାଶ୍ୱତ ନୃତ୍ୟ

ଶାଶ୍ୱତ ରଚିତ ଏହି ବ୍ରହ୍ମାଣ୍ଡ ବିସ୍ତୃତ
ସର୍ବଦା ରଚନା ଚାଲେ ନାହିଁ ଆଦି ଅନ୍ତ |-୧

ଅସଂଖ୍ୟ ନକ୍ଷତ୍ର କରି ଜ୍ୟୋତି ପ୍ରଜ୍ୱଳିତ
ଅନ୍ତରୀକ୍ଷେ ଅହରହ ଚାଲିଥାଏ ନୃତ୍ୟ |-୨

ସମସ୍ତେ ନିଜ ନିଜର କେନ୍ଦ୍ର ଚତୁର୍ଦିଗେ
ଘୂର୍ଣ୍ଣନ କରନ୍ତି ନିତ୍ୟ ନିର୍ଦ୍ଧାରିତ ବେଗେ |-୩

ସତେ କି ଅସଂଖ୍ୟ କେନ୍ଦ୍ର, ପରିଧି ଅସୀମ,
ଅଗଣିତ କୃଷ୍ଣ କେନ୍ଦ୍ରେ ନୃତ୍ୟରେ ନିମଗ୍ନ |-୪

ବାସନ୍ତୀ ଉତ୍ସବେ ସର୍ବେ କରନ୍ତି ନର୍ତ୍ତନ
ଯେପରି କି ମହାକାଶେ ସ୍ଥିତ ବୃନ୍ଦାବନ |-୫

ଚନ୍ଦ୍ର, ସୂର୍ଯ୍ୟ, ପୃଥ୍ୱୀ, ଗ୍ରହ, ଉପଗ୍ରହ ଯେତେ,
ବିଧିର ବିଧାନେ ଅକ୍ଷେ ଘୂରନ୍ତି ସମସ୍ତେ |-୬

ମହାନନ୍ଦେ ମହାକାଶେ ଓଁକାର ଗୁଞ୍ଜରେ,
ଦିବ୍ୟଦ୍ରଷ୍ଟା ଏକା ତାହା ଅନୁଭବ କରେ |-୭



ଅନନ୍ତ ବ୍ରହ୍ମାଣ୍ଡେ ଚାଲେ ସୃଷ୍ଟି ଓ ବିନାଶ,
ମଧୁର ସର୍ବଦା ସେହି ରଚନା ରହସ୍ୟ |-୮

ସୃଷ୍ଟି, ପାଳନ, ସଂହାର ଯାହାଙ୍କ ନିୟମ
ସେ ସର୍ବମୟ କର୍ତ୍ତାଙ୍କୁ ସତତ ପ୍ରଣାମ |-୯

*ଓଁ ଶାନ୍ତିଃ* ଧ୍ୟାନୀ ସାଧ୍ୱି (ମଞ୍ଜୁବାଳା କବି)

# ଶରଣଂ ଗଚ୍ଛାମି



କେତେ ଦୂର କେତେ ପଥ ଅତିକ୍ରମ କଲି
ପଥ ପ୍ରାନ୍ତେ କ୍ଳାନ୍ତ ହୋଇ ଶୋଇ ମୁଁ ପଡିଲି | -୧

ସ୍ୱପ୍ନରେ ଦେଖିଲି କାହିଁ ଲାଭା ଉଦ୍ଗୀରଣ
କେଉଁଠାରେ ଅବା ବହେ ମଳୟ ପବନ | -୨

କୋଟି କୋଟି ଲୋକେ ପୁଣି କାହିଁ ଯୁଦ୍ଧେ ରତ
କେଉଁଠି ବା ବାଜୁଥାଏ ଶାନ୍ତିର ସଙ୍ଗୀତ | -୩

କେଉଁଠି ନାରୀର ବସ୍ତ୍ର ହେଉଛି ହରଣ,
ନାରୀ ଜାଗରଣ ପାଇଁ କେଉଁଠି ଭାଷଣ | -୪

ବିଶ୍ୱାସର କେଉଁଠାରେ ଚାଲିଛି ଦହନ
କାହିଁ ଅବା ଲାଗିଥାଏ ପ୍ରେମ ସମ୍ଭାଷଣ | -୫

କେତେବେଳେ ସ୍ୱପ୍ନ ମୋର ଭାଙ୍ଗିଲା କେଜାଣି,
ଦୂରୁ ଶୁଭୁଥିଲା - ବୁଦ୍ଧଂ ଶରଣଂ ଗଚ୍ଛାମି | -୬

ଓଁ ଶାନ୍ତିଃ   ଧ୍ୟାନୀ ସାଧ୍ୱି   (ମଞ୍ଜୁବାଳା କବି)   ଅଗଷ୍ଟ ୨୦୧୪

# ଶରଣଂ ଗଚ୍ଛାମି



କେତେ ଦୂର କେତେ ପଥ ଅତିକ୍ରମ କଲି
ପଥ ପ୍ରାନ୍ତେ କ୍ଳାନ୍ତ ହୋଇ ଶୋଇ ମୁଁ ପଡିଲି | -୧

ସ୍ୱପ୍ନରେ ଦେଖିଲି କାହିଁ ଲଭା ଉଦ୍ଗୀରଣ
କେଉଁଠାରେ ଅବା ବହେ ମଳୟ ପବନ | -୨

କୋଟି କୋଟି ଲୋକେ ପୁଣି କାହିଁ ଯୁଦ୍ଧେ ରତ
କେଉଁଠି ବା ବାଜୁଥାଏ ଶାନ୍ତିର ସଙ୍ଗୀତ | -୩

କେଉଁଠି ନାରୀର ବସ୍ତ୍ର ହେଉଛି ହରଣ,
ନାରୀ ଜାଗରଣ ପାଇଁ କେଉଁଠି ଭାଷଣ | -୪

ବିଶ୍ୱାସର କେଉଁଠାରେ ଚାଲିଛି ଦହନ
କାହିଁ ଅବା ଲାଗିଥାଏ ପ୍ରେମ ସମ୍ଭାଷଣ | -୫

କେତେବେଳେ ସ୍ୱପ୍ନ ମୋର ଭାଙ୍ଗିଲା କେଜାଣି,
ଦୂରୁ ଶୁଭୁଥିଲା - ବୁଦ୍ଧଂ ଶରଣଂ ଗଚ୍ଛାମି | -୬

*ଧାନୀ ସାହୀ* *(ମଞ୍ଜୁବାଳା କବି)* ଅଗଷ୍ଟ ୨୦୧୪

# ଶେଷ ଦେଖା

କ୍ଷଣକୁ କ୍ଷଣ ସରି ସରି ଯାଏ ଜୀବନର ପ୍ରତି କ୍ଷଣ
ଲିଭି ଲିଭି ଯାଏ ଜୀବନ ପ୍ରଦୀପ, ବ୍ୟାକୁଳିତ ହୁଏ ମନ । -୧

ଭାସି ଭାସି ଆସେ ସ୍ମୃତିର ପଟଳେ ଯୌବନର ସେହି ଦିନ ।
କିଏ ଅବା ଥିଲା ସପନେ ମୋହର ଥିଲି କି କାହା ସପନ? -୨

ସରିଯାଇଅଛି ନାଟକ ମୋହର ଚାଲିଲି ମୋ ନିଜ ପଥେ,
ଜୀବନର ଏହି ଅନ୍ତିମ ବେଳାରେ କର ଯୋଡି କରେ ନମସ୍ତେ । -୩

ଧୀରେ ଧୀରେ ସବୁ ଭାସିଯାଏ ମନେ ଯେପରି ଏକ ମୁହୂର୍ତ୍ତ,
ସବୁ ଭାବନାକୁ ତ୍ୟାଗ କରିଦେଇ ହେଲି ମୁଁ ଶରଣାଗତ । -୪

*ଓଁ ଶାନ୍ତିଃ ଧାନୀ ସାହ୍ନି (ମଞ୍ଜୁବାଳା କବି)*

ଅଗଷ୍ଟ ୨୦୧୪

ଓଁ ଶାନ୍ତିଃ

# ଶୂନ୍ୟ-ହସ୍ତ

ନ ଯାଏ ଆଗକୁ ନ ଫେରେ ପଛକୁ
ଘେରାବନ୍ଦୀ ଏହି ରାସ୍ତା |
ଚତୁର୍ଦିଗେ ବ୍ୟାପ୍ତ ଅଭେଦ୍ୟ ପର୍ବତ
ମଧ୍ୟସ୍ଥଳେ ଉପତ୍ୟକା || -୧

ପଲକ ପଡ଼େ ନା ପୁଲକ ଉଠେ ନା
ନୟନେ ଅଶ୍ରୁ-ସାଗର |
ରଜନୀ କଟେ ନା ସପନ ଆସେନା
ଭରା ଅମା ଅନ୍ଧକାର || -୨

ସରିତ ସମାନ ବହି ମୁଁ ଆସିଲି
ଏବେ ମଝି ମୁହାଣରେ |
ନିଏ ନା ସାଗର ଫେରେ ନାହିଁ ନୀର
ଚିତ୍କାର କଲି ଆତୁରେ || -୩

ଅତୀତ ଫେରେ ନା, ଆଜି ବି କଟେନା,
ଭବିଷ୍ୟ ବି ରହେ ଦୂର |
ଏ ଅମା ଅନ୍ଧାରେ କେମିତି ଖୋଜିବି
ବିନ୍ଦୁ ବିନ୍ଦୁ ପ୍ରୀତି ଝର || -୪

ତପସ୍ୱିନୀ ସାଜି, ସଂସାରକୁ ତେଜି
ଚାଲି ଗଲି କେତେ ପଥ |
ଅଗମ୍ୟ ବନସ୍ତେ ରହିଲି ଅସ୍ତିତ୍ୱେ
କିଛି ନାହିଁ, ଶୂନ୍ୟ-ହସ୍ତ || -୫

ମଞ୍ଜୁବାଳା କବି
୨୦୧୪ ଅଗଷ୍ଟ

## ଓଁ ଶାନ୍ତିଃ

# ଶୂନ୍ୟଗର୍ଭ

ସାଥୀ ମୋତେ ରଖ ତୁମ
ଶୂନ୍ୟଗର୍ଭ ବଂଶୀ ରେ
କ୍ଷଣେ କ୍ଷଣେ ଝରୁଥିବି
ଅସମାପ୍ତ ସୁରେ |୧
ଅଣୁସମ ବିଞ୍ଚି ଦିଅ
ପୁଷ୍ପ ସୁବାସରେ
ମହକିବି ସୁରଭିରେ
ତୁମ ପରିଧିରେ |୨
ମିଶାଇ ଦିଅ ମୋତେ ସାଥୀ
ସାଗର ଜଳରେ
ରୌଦ୍ରେ ଉଡି ରହିଯିବି
ତୁମରି ଜଟାରେ |୩

ସ୍ୱାହା କର ନେଇ ତୁମ
ଶ୍ରୀ ଯଜ୍ଞ କୁଣ୍ଡରେ
ଓଁ କାରେ ଗୁଞ୍ଜରିବି ମହା
ଶୂନ୍ୟାକାଶରେ |୪
ବିନାନ୍ଦ୍ରିୟେ ରଖ ନେଇ
ମାତ୍ର ଶବଦରେ
ଉଚ୍ଚାରିବି ଶ୍ରୁତି ଶାସ୍ତ୍ର
କଳ୍ପ ଆରମ୍ଭରେ |୫
ତୁମ କଳା ରଙ୍ଗ ଦିଅ ମୋ
ମୃଣ୍ମୟୀ ଅଙ୍ଗରେ
ମୃତ୍ୟୁ ପରେ ରହିଥିବି
ମହା ଶୂନ୍ୟଗର୍ଭରେ |୬
ସାଥୀ ମୋତେ ରଖ ତୁମ
ଶୂନ୍ୟ ଗର୍ଭ ବଂଶୀରେ...

ମଞ୍ଜୁବାଳାକବି. ଓଁଶାନ୍ତିଃ

# ଶୂନ୍ୟଭୂମି

କାଲି କାଲି ବୋଲି
କେତେ ସାଉଁଟିଲି
ଆସି ସେ ଆସିଲା ନାହିଁ
ଘୁରିଗଲା ଚକ୍ର
ଝୁରୁଥିଲା ନେତ୍ର
ଚିହ୍ନ ବି ଦିଶିଲା ନାହିଁ |-୧
ନିଜ ନିଜ ଭାଳି
କେତେ ମୁଁ ଖୋଜିଲି
ନିଜକୁ ପାଇଲି ନାହିଁ
ଲହରୀ ପରାୟେ
କେତେ ମୁଁ ଖୋଜିଲି
ଗାର ବି ପଡ଼ିଲା ନାହିଁ |-୨
ସୁଖ ସୁଖ ବୋଲି
କେତେ ପରଖିଲି
ଗଗନ ପବନ ଡେଇଁ
ଦିଗ ଭୁଲିଗଲି
ପକ୍ଷ ହରାଇଲି
ଛାଇ ବି ରହିଲା ନାହିଁ |-୩
ଅଗେ କାରାଗାର
ପଛେ ତମୋଘର
ମଝିରେ 'ମୁଁ' ଦିଶେନାହିଁ
ଅସାର ସଂସାର
ଭଗ୍ନ ବଲିଘର
ଶୂନ୍ୟ ଏଇ ଚରା ଭୁଇଁ |-୪

ମଞ୍ଜୁବାଳା କବି

# ସୂର୍ଯ୍ୟଙ୍କ ବିଦାୟବେଳା

ପ୍ରତିଚୀ ଗଗନେ ସନ୍ଧ୍ୟା ଆଗମନେ
ପ୍ରବାଳ-ରକ୍ତିମ ଆଭା,
ଲାଲି ପାଟ ପିନ୍ଧି ସତେ ସନ୍ଧ୍ୟାରାଣୀ
ସମ୍ମୁଖେ ହୋଇଛି ଉଭା | -୧

ପର୍ବତ ପଶ୍ଚାତେ ଲୋହିତ କିରଣେ
ସୁବର୍ଣ୍ଣ ରତ୍ନେ ମଣ୍ଡିତ,
ସତେ କି ଧରଣୀ ସମାଗମ ପାଇଁ
ବିହ୍ୱଳିତେ ଉପସ୍ଥିତ | -୨

ଧବଳ-ଧୂସର ମେଘ ମଧ୍ୟେ ରଶ୍ମି
ରେଣୁ ରେଣୁ ଆସେ ଝରି,
ବାସର ରଜନୀ ବାସୀ ପ୍ରଭାତରେ
ଲାଜେ ଯଥା ବଧୂ ଲାଲି | -୩

ଲତା-ଗୁଳ୍ମ ମଧ୍ୟେ ହରି ପାଦପଦ୍ମ
ଯେପରି ଶବର ଦେଖେ
ସେପରି ହେ ସୂର୍ଯ୍ୟ! ତୁମ ଲାଲି ଚିତ୍ର
ଆକାଶୁ ପୃଥିବୀ ଦେଖେ | -୪

ଆହେ ବିଭାବସୁ! ଜୀବନ ଆଧାର,
ଘେନ ପୂଜା ଉପଚାର,
ଯୋଡ ହସ୍ତ ତୋଳି କରେ ମୁଁ ପ୍ରତୀକ୍ଷା
ତୁମ୍ଭ ପ୍ରତ୍ୟାବର୍ତ୍ତନର | -୫

ଓଁ ଶାନ୍ତି ଧ୍ୟାନୀ ସାଭ୍ୱି (ମଞ୍ଜୁବାଳା କବି)



# ସୃଷ୍ଟି

ନିମିଷକ ଲାଗି ନିମିଷକେ ତୁମେ
ସର୍ଜନା କଲ ଜଗତ
ଅନ୍ତରେ ଅନ୍ତରେ ରହିଅଛ ପ୍ରଭୁ
ସର୍ବଦିଗେ ସର୍ବବ୍ୟାପ୍ତ ।   -୧

ଲୁଚି ଲୁଚି କରି ଖେଳୁଥିଲ ତୁମେ
ଖେଳୁଥିବ ଅବିରତ
ପ୍ରାଣବାୟୁ ଭରି ସବୁରି ହୃଦୟେ
କରୁଅଛ ଆତଜାତ ।   -୨

ଅଗଣିତ ପିଣ୍ଡେ ଦର୍ପଣ ସମାନେ
ଦେଖ ନିଜ ପ୍ରତିଛବି
କର୍ତ୍ତା ହେଇ ତୁମ ଅକର୍ତ୍ତାପଣ
ଦେଖେ ଖାଲି ଅନୁଭବି ।   -୩

ତୁମରି ଇଚ୍ଛାରେ କଲ ତୁମେ ସୃଷ୍ଟି,
କେ ଜାଣେ ତୁମର ମାୟା,
ମାୟା ଭଉଁରୀରେ ବୁଡ଼ାଇଛ ବିଶ୍ୱ,
ଦିଶେ ନାହିଁ ତୁମ ଛାୟା ।   -୪

ଦୟା କର ଯା'ରେ ଦିଅ ଦିବ୍ୟଦୃଷ୍ଟି,
ଦେଖେ ସେ ତୁମ୍ଭଙ୍କୁ ନେତ୍ରେ,
ବିଶ୍ୱମୟ ହୋଇ ତୁମ୍ଭସଙ୍ଗେ ମିଶି
ରହେ ସଦାନନ୍ଦ ଚିତ୍ତେ ।   -୫

*ଧ୍ୟାନୀ ସାଦ୍ଧ୍ୱୀ*   *(ମଞ୍ଜୁବାଳା କବି)*

21-10-2014   ଓଁ ଶାନ୍ତିଃ

# ପ୍ରେମାମୃତ

ମଞ୍ଜୁବାଳା କବି.ଓଁଶାନ୍ତିଃ

ଆସପାଶେ ପ୍ରିୟା
କର ନାହିଁ ମାୟା
କାଳ ଯାଉଅଛି ବିତି
ଗଲାଣି ଏପରି
ଯୁଗ ଅସୁମାରୀ
କେତେ ବା ରହିଛି ବାକି |୧

ସାଥେ ନିତି ନିତି
ପାନ କରି ସାଥୀ
ରହିଗଲା କିଛି ବାକି
ଅଛି ଯଦି କିଛି
ସୁଧାମୃତ ଧାରା
ଦିଅ ମୋତେ ତାହା ସଖୀ | ୨

ସୁଧାରେ ଅଧର
ହେଲଣି ଅଧିର
ନିଅ ଗୋ ସଜନୀ ଦୁରେ
ସେ ଅମୃତ ପାନେ
ଏ ମଧୁ ଲଗନେ
ବୁଡିଯିବା ଅନ୍ଧକାରେ |୩

ସରି ଆସିଲାଣି
ଏ ମାଟି ପାତ୍ରରେ
ତୁମ ପ୍ରେମାମୃତ ମଧୁ
ବୁଡାଇ ଦିଅ ଗୋ
ପ୍ରେମର ସାଗରେ
ପିଇ ତରିଯିବା ସିନ୍ଧୁ |୪

# -: ସୂର୍ଯ୍ୟେନ୍ଦୁସଙ୍ଗମ :-

ଦୁଇପକ୍ଷେ - ସାକ୍ଷୀସମ
ଅନ୍ତରୀକ୍ଷେ - ରବି-ସୋମ
କ୍ଷଣିକର - ସାକ୍ଷାତରେ
ଏକ ଆନେ - ଆଲିଙ୍ଗନ
କରିଥାନ୍ତି - ଇଙ୍ଗିତରେ
ଦିଗନ୍ତର - ସୀମାପାରେ |-୧

ରକ୍ତବସ୍ତ୍ରେ - ଦିବାକର
ଶୁଭ୍ରବେଶୀ - ଶଶଧର
ଚକ୍ରବାଳ - ଦୁଇପାରେ
ଏକ ଆନେ - ପ୍ରତିଶ୍ରୁତି
କରିଥାନ୍ତି - ମିଶିବାର
ସୂର୍ଯ୍ୟ-ଇନ୍ଦୁ - ସଙ୍ଗମରେ |-୨

ଅମାବାସ୍ୟା - ନିଶୀଥରେ
ତାରକିତ - ଅନ୍ଧକାରେ
ମହାକାଶେ - ପ୍ରେମଭରେ
ଧରଣୀର - ପଶ୍ଚାତରେ
ଏକ ଆନେ - ଆଲିଙ୍ଗନେ
ମଜ୍ଜିଥାନ୍ତି - ଶୃଙ୍ଗାରରେ |-୩

ବିଭାବସୁ - କର୍ମବୀର
ଶୁଭ୍ରାରାଣୀ - ପୂର୍ଣ୍ଣିମାର
ଦେଇଯାନ୍ତି - ସମାଚାର
ପୁରୁଷରେ - ପ୍ରକୃତିର
ଧୈର୍ଯ୍ୟବଳେ - ଚକ୍ରାକାରେ
ଚିରନ୍ତନ - ମିଳନର |-୪



ଓଁ ଶାନ୍ତିଃ
ମଞ୍ଜୁବାଳା କବି (ଧାନୀ ସାତ୍ୱି )



# ସ୍ୱପ୍ନଭଙ୍ଗ



ଧରି ଯେତେ ଭାବ ଭବେ କଲି ଭାବ
ସମୟର ସ୍ରୋତେ ଚଳି ହେଲା ଭାବନାର ବଳି
ବାରମ୍ବାର ଭାବ ହନନ ହେଲା
ଭାବିନୀ ଭାବନା କୂଳ ଲଙ୍ଘିଲା || -1-

ଧୀରେ ଧୀରେ ସୂତା ଗଣ୍ଠି ହୁଗୁଳିଲା
ଯେତେ ଟାଣି ଥିଲା ଫୁଙ୍ଗୁଳା ହେଲା
ରାଗ-ବିରାଗରୁ ଅପସରି ଗଲା
ଜଳଧିଜଳେ ନଦୀସ୍ରୋତ ମିଶିଲା ||-2-

ପଛକୁ ଆଉ ମନ ଚଳିଲା ନାହିଁ
କ୍ଷିପ୍ର ବେଗରେ ଧାଇଁ ଗଲା ପଳାଇ
ଦିଶେ ନା ଦୂରକୁ, ନ ଦେଖି ପାଖକୁ
ଧରିଲି ସ୍ୱ-ଭାବେ ନିଜେ ନିଜକୁ || -3-

ସବୁ ତ ସ୍ୱପ୍ନ ଏଠି ସ୍ୱପ୍ନରେ ସ୍ୱପ୍ନ
ଭାବରେ ଚାଲେ ଖେଳ ନିରବଚ୍ଛିନ୍ନ
ସ୍ୱପ୍ନରେ ସ୍ୱପ୍ନକୁ ବିସର୍ଜିତ କଲି,
ସହଜ ସ୍ୱଭାବେ ଭାବେ ସ୍ଥିତ ହେଲି || -4-

ଶବ୍ଦ ଗଲେ ଚଳି ଆକାଶ ପଥେ
ରୂପ ଗଲା ଚାଲି ଆଲୋକ ସାଥେ
ଲେଉଟିଲା ନଦୀ ଉଦ୍‌ଗମସ୍ଥାନେ
ରହିଲା ଶାଶ୍ୱତ ଓଁକାର ଧ୍ୟାନେ || -5-

ମଞ୍ଜୁବାଳା କବି ଓଁ ଶାନ୍ତିଃ

# ସ୍ୱପ୍ନରଙ୍ଗ

ଅପେକ୍ଷା ମୋହର
ଉପେକ୍ଷା ତୁମର,
ବର୍ଷ ବର୍ଷ ଯାଏ ବିତି |
ସରିଯାଏ ଦିନ
ବିତିଯାଏ ରାତି
ଭୀତି ରେ ହିଁ ଅଛି ସ୍ଥିତି ||      -୧-

ନା ତୋ ରୀତି ନୂଆ
ନା ମୋ ପ୍ରୀତି ନୂଆ
ହାରି ଜିତି କରେ ଗତି |
ସୁଖର ପ୍ରତୀକ୍ଷା
ଦୁଃଖରୁ ମୁମୁକ୍ଷା
ଏ ଜୀବନ ଗତି-ଗୀତି ||      -୨-

ଛଡାଇ ପୁଲକ
ଦେଲ ଯେ ମହକ
ଶଙ୍କି ଶଙ୍କି ଲୁଚିଯାଏ |
କୋଇଲି ବିରହ
ଚାତକୀର ଭୟ
ଥରି, ଥିରି ଡାକ ଦିଏ ||  -୩-

ରଙ୍ଗ ଯାଦୁଗରୀ
ଦିଅ ଭରି, ସାତ
ନୁହଁ ଗୋ, ନିୟୁତ ରଙ୍ଗ |
ମୋ ଜାଗୃତି-ଦ୍ରଷ୍ଟା
ସପନର ସ୍ରଷ୍ଟା,
ତୁମ ସ୍ୱପ୍ନ ରଙ୍ଗ
ଭରି ଅଙ୍ଗେ ଅଙ୍ଗେ
ଥିବି ତୁମ ସଙ୍ଗ ସଙ୍ଗ ||  -୪-

ମଞ୍ଜୁବାଳା କବି   ୨୫-ମେଁ-୨୦୧୬

# The Biography of Art That Matters

The producer faces legal complicacies, serves terms of imprisonment. The raw materials are sieged for chemical test for decades, his top officers are detained for days and nights for break-less interrogation; many who cannot stand it desert him. At last the manufacturing starts, many workers get injured or incapacitated, eyes of their families swollen with tears. The product is launched.

It becomes a popular household item for its utility, quality and easy availability. Cheers are afloat; advertisements boost sale. Why should the consumer bother about what happened to whom in that firm, now that the useful product is in hands' reach? It is not their concern. It should not be.

People enjoy novels, stories, poetry. What they have to do with how much toil, suffering, tears and blood of the writer, the authors of his referral books, of librarians who lend help is behind the product they love so much? And what business do the writer and the like have to go about telling what happened to them when? Why should people listen to things that concern them not? Noise is sound pollution.

Yes, this is the biography of art of all shorts. Want me to cite examples? Well, I place just one:

"…. chitthi naa koi sandesh,
jaane wo kaunsaa desh,
Jahaan tum chale gaye

(No letter, no massage,
Who knows the world,
For which you eparted....."),

sings Jagjit Singh, the great artist (now no more). And how charming his voice, how appealing his tone, how pleasing the song is indeed!! And how freely he sings, all might have seen on the TV screen. This he sang after his only young son died of accident followed by adoption by him and his wife, of a young girl as their daughter who in a few days, for obscure reasons committed suicide.

But great art was born; it charms millions: motionless, speechless, The song is so touching, so melodious!

# ତୁମ ପାଇଁ ପ୍ରେମ-ଫୁଲ

ପ୍ରେମ ଫୁଲ ଖୋଜି ଦିଗ ଯାଏ ହଜି ତୁମରି ଆଦେଶ ମାନି;
ଛପି ଛପି ଯାଏ ଆକାଶ କୁସୁମ ଲୁଚିଯାଏ ଅଭିମାନୀ ||
-୧
ନାନା ଫୁଲ ଦେଖି ସେ କଣ୍ଟାରେ ଲାଖି ବହେ ରକ୍ତ ଧାର ଧାର;
ସେ ରକ୍ତ ଧାରାରେ ତୁମ ପ୍ରତିଛବି ଦିଶେ ମୋତେ ବାରମ୍ବାର ||-
୨
ସୂର୍ଯ୍ୟ ତେଜ ସମ ସେ ଫୁଲର ରେଣୁ, ଲାଗି ଜଳି ଯାଏ ଡେଣା;
ହେଲେ ବି ଖୋଜୁଛି ତୁମ ପ୍ରେମ ଫୁଲ; କାନ୍ଦୁଛି ଜୀବନବୀଣା ||
-୩
ଝରି ଅଶ୍ରୁଧାର ନୟନୁ ମୋହର ଦିଶେ ସବୁ ଫିକା ଫିକା;
ଉଜ୍ଜ୍ୱଳ ହେଲେ  ବି ତୁମ ଚିତ୍ରଛବି ଝୁରି ମରେ ଏକା ଏକା ||
-୪
ନ ଆସିଲେ ଫେରି ପ୍ରେମପୁଷ୍ପ ଧରି କରିବନି ମନ ଉଣା;
ଅରୁଣ ଲାଲି ରେ ସାଗର ବେଳାରେ ଦେଖିବ ଲେଖା ମୋ ନାଆଁ ||
-୫
କି ବା ଅତୀତର ମଙ୍ଗଳ ବେଦୀରୁ ଆଣିବ ସ୍ମୃତିରେ ମୋତେ;
ରକ୍ତ ଜୁଡୁବୁଡୁ ଆଜି ବି ଶୋଇଛି ପ୍ରେମ-ଫୁଲ ଧରି ହାତେ ||
-୬

ମଞ୍ଜୁବାଳା କବି ୧୭-୧୨-୨୦୧୬

# ଉଆଁସ ରାତିର କଇଁ



ସିଏ ତ ବିଗତ, ହେଲାଣି ଅତୀତ,
ସପନର ଚରାଭୂଇଁ
ଅଛି ସେ ତ ଖାଲି କ୍ଷୀଣ ମୋ ମାନସେ,
ପୁଲକ ଯାଏ ତା ଛୁଇଁ | -୧

ଅନ୍ଧକାରରେ ପରାଣ ମୋ ଝୁରେ –
ପାରନ୍ତି କି ଟିକେ ଛୁଇଁ,
ମରିଚୀକା ପରି ସପନ ମୋହର,
ଏକା କାନ୍ଦେ କଇଁ କଇଁ | -୨

ଶୂନ୍ୟ ଆକାଶୁ କ୍ଷୀଣ ପ୍ରତିଧ୍ୱନି
ଭାସି ଆସେ ଧୀରେ ଧୀରେ
କ୍ଷୀଣତର ହୋଇ ଲୁଚିଯାଏ ସେ ତ
ଶୁଣିବା ଆଗରୁ ଥରେ | -୩

ଜାଗି ଉଠେ ମନେ ଉଆଁସ ରାତିରେ
ଉଠୁଥିଲା ଚାନ୍ଦ ଚାହିଁ,
ଖାଲି ପଡିଆରେ ମହକ ଜଗାଇ
ନାଚୁଥିଲା ନୀଳ କଇଁ | -୪

ଚାଲି ମୁଁ ଆସିଛି ପଥ ବହୁ ଦୂର,
ଲାଗେ ସବୁ ପର ପର,
ଆଜି ବି ରହିଛି ମୋ ମନକୁ ଘେରି
ତୁମରି ମନ-ପ୍ରାଚୀର | -୫

ଆଜି ମୋ ମନରେ ତୁମର ପରଶ
କରେ ମୋତେ ଆଲୋଡନ
ନେଇଯାଅ ସାଥୀ, ଝୁରେ ମୁଁ ଯେ ଏଠି,
ଯିବାକୁ ଆତୁର ପ୍ରାଣ | -୬

ଚାଲିଯିବା ଆମେ ଆକାଶର ପାର,
କୋଳାହଳଠାରୁ ଦୂରେ,
ତୁମ ବୀଣା ସୁରେ ମୋ ପାଦ ନୂପୁର
ଗୁଞ୍ଜରିବ ଅନନ୍ତରେ | -୭

*ଓଁ ଶାନ୍ତି* ଧ୍ୟାନୀ ସାଧ୍ୱି (ମଞ୍ଜୁବାଳା କବି)

# ଉପରାଣ

ନିଜକୁ ଯେତେ ମୁଁ ପାଏ ନାହିଁ ଭଲ,
ଭଲ ପାଅ ତୁମେ ସେତେ |
ଭୁଲି ମୁଁ ନିଜକୁ ଗଲେ ଅନ୍ୟ ପାଶେ,
ତୁମେ ଭୁଲ ନାହିଁ ମୋତେ || -୧-

ସୂକ୍ଷ୍ମଠାରୁ ସୂକ୍ଷ୍ମ କମ୍ପନ-ସ୍ପନ୍ଦନ
ଜାଣ କ୍ଷଣେ ପ୍ରତିକ୍ଷଣେ |
ଯେତେ ଗତି ମୋର ଯୁଗ ଯୁଗ ଧରି,
ସାଥେ ଅଛ ଅନୁକ୍ଷଣେ || -୨-

ମୁଁ ତ ନୁହେଁ ରାଗୀ ନାଁ ଅଟେ ବିରାଗୀ,
ଜାଣେ ନାଁ ମୁଁ ନିଜେ କିଏ |
ଜାଣିଛି ଏ ମନ, ଚାଲିଛି ସ୍ପନ୍ଦନ,
କେ ଅବଶ୍ୟ ଭଲ ପାଏ || -୩-

ଆଜି ମନେ ପଡ଼େ ଆସିବାର ବେଳେ
ଆତ୍ମାର ଉତ୍ତରୀ ଦେଇ |
ଥି଼ରି ଥି଼ରି କାନେ ମଧୁର ବଚନେ
କହିଥି଼ଲ ସତ୍ୟ ଏହି || -୪-

"ଯା' ସଖି଼ ମୋର କର୍ମପଥେ ତୋର
କର୍ମରେ ରହିବୁ ଲୀନ |
ଆତୁରିତେ ଯେବେ ମୋତେ ତୁ ଝୁରିବୁ
ଖୋଲିବି ତୋ ଉପରାଣ ||" -୫-

ଶିରେ ଉପରାଣ ଦେଇ ମୁଁ ଚାରଣ
କଲେ ଦିଶେ ନାହିଁ କିଛି |
ତୁଙ୍ଗ ଶୃଙ୍ଖର କି ତଟିନୀ, ସାଗର,
ଅଗ୍ନି, ସୋମେ ଯାଏ ପଶି || -୬-

ଅଚେତନ ଚିତ୍ତେ ଏ ସଂସାର ପଥେ
ହେଲେ ଯେତେ ଅଗ୍ରସର |
ବିଶ୍ୱାସ-ଉତ୍ତରୀ ରଖିଅଛି ଶିରେ
କରି ନାହିଁ କେବେ ଦୂର || -୭-

ନିଃସଙ୍ଗରେ ଆଜି ଭରା ଏହି ଆଖି଼
ଝୁରେ ଆଜି ଅନ୍ତଃପୁରେ |
ଏବେ ଅବତରି ଉଠାଅ ଉତ୍ତରୀ,
ଡାକୁଛି ଅତି ଆତୁରେ || -୮--

ମଞ୍ଜୁବାଳା କବି ଓଁ ଶାନ୍ତିଃ

## ବିଭାତ ଲଗ୍ନ

ଉଠ ସାଥୀ, ଖୋଲ ଆଖି, ବିଭାତ ଲଗନ |
କାନନେ କଳି କଲେଣି ଚକ୍ଷୁ-ଉନ୍ମିଳନ || -୧-||

ନଭେ ନକ୍ଷତ୍ର ମାଳିକା ରାତ୍ରି ଉଜାଗରେ |
ବିଶ୍ରାମ କଲେଣି ଯାଇ ଅନମ୍ବର ପାରେ || -୨-||

ଦିଶିଲାଣି ଭାନୁଦେବ ଆଗମ-ଇସାରା |
ତାଙ୍କ ପରିଚର୍ଯ୍ୟା କରେ ଅସ୍ତିତ୍ୱର ଧାରା || -୩-||

ଝର ଝର ଝରିଲାଣି ପ୍ରଭାତ କିରଣ |
ଉଠ ସାଥୀ, ଖୋଲ ଆଖି, ବିଭାତ ଲଗନ || -୪-||

ଗାଅ ଏ ଲଗନେ କବି ! ସ୍ୱାଗତ ସଂଗୀତ |
ଜଡ଼ ସଚେତନ ସର୍ବେ ହେଲେଣି ଜାଗ୍ରତ || -୫-||

ନବବଧୂଗଣ ଚଳି ଯାନ୍ତି ପୁଷ୍କରିଣୀ |
କଟୀ ଧାରେ ଅଣ୍ଟାବିଛା ବାଜୁଛି ବାଜେଣି || -୬-||

ଗୋମାତାଏ ଦୁଗ୍ଧପାନ କରାନ୍ତି ବତ୍ସାରେ |
ପୂଜକଗଣ ବିଭୋର ପୂଜା- ଅର୍ଚ୍ଚନାରେ || -୭-||

ମନ୍ଦିରରୁ ଆସେ ଭାସି ଶଙ୍ଖ ଘଣ୍ଟ ସ୍ୱନ |
ଉଠ ସାଥୀ, ଖୋଲ ଆଖି, ବିଭାତ ଲଗନ || -୮-||

ଗାଅ ଏ ଲଗନେ କବି ! ମଙ୍ଗଳ ସଂଗୀତ |
ତେଜି କ୍ଳେଷ କ୍ଳାନ୍ତି ହେଉ ଚିତ୍ତ ଆନନ୍ଦିତ || -୯-||

ମଞ୍ଜୁବାଳା କବି

ଜୁନ ୨୦୧୬

# ବିଚିତ୍ରତା

କୋକିଳ ପାଇଲା ସୁମଧୁର ସ୍ୱର
ରଙ୍ଗ କଳା କଲୁ ତାର
ମୟୂର ଚନ୍ଦ୍ରିକା ରଖି ତୋ ମସ୍ତକେ
ହରିଲୁ ଇଚ୍ଛା ତାହାର । -୧

ସାଗରର ଜଳ ଲବଣରେ ଭରି
ଢେଉ ଦେଲୁ ଅସୁମାରି
କାହିଁ ବାସସ୍ଥାନ, କାହିଁ ବାଲିଚର
ଦିଶେ ମରୀଚିକା ପରି । -୨

ଆଜିର ମିତ୍ର କାଲିର ଶତ୍ରୁ
ଭ୍ରମମୟ ଏ ବନ୍ଧୁତା
ଅସୂୟା ଭିତରେ ପ୍ରେମର ଭ୍ରାନ୍ତି
କଳ୍ପନା ସବୁ ମିଥ୍ୟା । -୩

ଶ୍ମଶାନକୁ କଲୁ ମୁକ୍ତିର ପାହାଚ
ସଂସାରେ ମୃତ୍ୟୁର ଖେଳା
ଚତୁର୍ଦ୍ଦିଗେ ତୋର ଦ୍ୱନ୍ଦ୍ୱ ରଚାଇଲୁ,
ବିଚିତ୍ର ତୋହର ଲୀଳା । -୪

ଯୁଗଯୁଗାନ୍ତରୁ ପ୍ରାଣ ତୁ ଦେଇଛୁ
ରହିଅଛୁ ମୋର ସାଥେ
ମହା ଅନ୍ତରୀକ୍ଷେ ପୃଥିବୀରେ ରଖି
ଘୂରାଉଛୁ ତୋର ହାତେ ।-୫

ଅନନ୍ତ କାଳରୁ ଭ୍ରମଣ କରି ମୁଁ
ଭାଙ୍ଗିଲାଣି ମନ ମୋର
ମାଗୁଣି ଏତିକି କରୁଛି ତୋ ଠାରେ -
କରି ନେ ଏଠୁ ଉଦ୍ଧାର । -୬

*ଓଁ ଶାନ୍ତିଃ ଧ୍ୟାନୀ ସାକ୍ଷି (ମଞ୍ଜୁବାଳା କର)*



# ବିଦାୟ ବେଳା



ବିନା ସାଧନରେ ଗାଉଛି ମୁଁ ଆଜି
ବେସୁରା ରାଗିଣୀ ଗୀତ
ଦୁନିଆଁରେ କେହିଁ ବୁଝୁ ବା ନ ବୁଝୁ,
ବୁଝ ମୋ ପରାଣ ମିତ | -୧

ମଉଳା ଫୁଲରେ ଗୁନ୍ଥିଲି ମାଳା ମୁଁ
ସୂତା କଲି ଅଶ୍ରୁଧାରା
ଏଇଠି ସଭିଏଁ ସଜଫୁଲ ସାଥୀ,
ତୁମେ ହିଁ ଚିର ସାହାରା | -୨

ଭାଙ୍ଗି ତ ଗଲାଣି ମିଥ୍ୟା ପ୍ରତିଶ୍ରୁତି,
ନିଷ୍ଫଳ ମିଥ୍ୟା ଆଳାପ
ବୃଥା ଅଭିସାରେ ଶୂନ୍ୟ ରଙ୍ଗମଞ୍ଚେ
ଶୁଣେ ମୁଁ ନିଜ ସଂଳାପ | -୩

କର୍ପୂର ତ ଗଲା କନା ବି ଉଡିଲା,
ଅଛି ସତ୍ୟ - ଶୂନ୍ୟସ୍ଥାନ
କିଏ ବା ଦେଖିବ, କାହାକୁ ଦେଖିବ,
ଅଛି ଖାଲି ମହାଶୂନ୍ୟ | -୪

ଅନ୍ତରନିବାସୀ ସାଥୀ ହୁଅ ଆସି
ନୂତନ ପ୍ରଦୀପ ଜାଳି
ସେ ଦୀପ-ଲହରେ ଗାଇବି ରାଗିଣୀ
ପରମ ଓଁକାର ତୋଳି | -୫

ଫେରିଯିବି ତୁମ ସୀମନ୍ତିନୀ ସାଜି
ତାରକାପୁଞ୍ଜ ମେଳେ
ଅଳଙ୍କାର ଦେଇ ବିଦାୟ କରିବ
ପ୍ରକୃତି ତା ଅଶ୍ରୁଜଳେ | -୬

*ଓଁ ଶାନ୍ତି* ଧ୍ୟାନୀ ସାଦ୍ଧ୍ୱି (ମଞ୍ଜୁବାଳା କବି)

# ବିଶ୍ୱମୟ-କବି

ବିଶ୍ୱମୟ ତୁମେ କବି
ଲେଖନୀରେ ତୁମେ ଗଢି ଚଳିଯାଅ
ଅଗଣିତ ପ୍ରତିଛବି |

ଶ୍ମଶାନେ ବିରଚ ଅମୃତମୟ ଗୀତି
ସଂସାର-ସାଗରେ ପ୍ରେମ-ଦୁଃଖର ଛବି;
ଆକାଶରୁ ତୋଳ କୁସୁମ ଭଳି କି ଭଳି
ଶୂନ୍ୟେ ଖେଳାଅ ରଙ୍ଗୀନ ଦୀପାବଳୀ;
ଛନ୍ଦ, ରାଗରେ ସର୍ଜନା କର
ଶାଶ୍ୱତ ଗୀତି ମାଳା,
ଅଳଙ୍କାରରେ ସୁଶୋଭିତ କର
ବିଶ୍ୱ-ଭାରତୀ ଗଳା |

ବିଶ୍ୱମୟ ତୁମେ କବି
ଲେଖନୀରେ ତୁମେ ଗଢି ଚଳିଯାଅ
ଅଗଣିତ ପ୍ରତିଛବି |

ବେଦ-ଉପବେଦ, ଗ୍ରନ୍ଥ, ମହାପୁରାଣ

ଚଳଚଞ୍ଚଳ ସ୍ନିଗ୍ଧ ମଧୁର ପ୍ରାଣ;
କଳ୍ପନାତୀତ ବିଶାଳ ସୃଷ୍ଟି କୋଳେ
ଅଣୁ ଭିତରେ ବି ତୁମ କଳ୍ପନା ଖେଳେ;
ଅସୀମ-ବିରାଟ କ୍ଷୁଦ୍ରରୁ କ୍ଷୁଦ୍ରତର
ତୁମେ ସବୁଠାରେ ସୂକ୍ଷ୍ମ-ଶରୀରେ
କେମିତି ପ୍ରବେଶ କର?

ଛନ୍ଦ-ରାଗରେ, ଅଳଙ୍କାରରେ
ଲେଖନୀ କେମିତି ରଖ,
ଗ୍ରହରେ, ତାରାରେ, ରବି-ଶଶଧରେ
ଦେଇ ଚାଲିଥାଅ ଅଭିନବ ରୂପରେଖ ?

ବିଶ୍ୱମୟ ତୁମେ କବି
ଲେଖନୀରେ ତୁମେ ଗଢି ଚଳିଯାଅ
ଅଗଣିତ ପ୍ରତିଛବି |

*ଓଁ ଶାନ୍ତିଃ   ଧାନୀ ସାକ୍ଷି   (ମଞ୍ଜୁବାଳା କବି)*

# କ୍ଷଣେ କ୍ଷଣେ ସ୍ୱପ୍ନ

କ୍ଷଣେ କ୍ଷଣେ ଅସୁମାରୀ
ରଚନା ସଂସାରେ
ବିତି ଯାଏ କଳ୍ପ କଳ୍ପ
ନିଷ୍ଫଳ ଆଶରେ ।- ୧
ପଦ୍ମତୋଳା ସମ କର୍ମ
ଗୁଞ୍ଜରେ କର୍ଣ୍ଣରେ
ପୁନଃ ପୁନଃ ଜନ୍ମ ନେଇ
ବିଳପେ ଭୂମିରେ ।-୨
ଚକ୍ରାକାରେ ଘୂରିବୁଲେ
ଗଗନେ ପବନେ
ଖୋଜିଚାଲେ ନିଜକୁ ମୁଁ
ଧନ ଜନ ମାନେ ।-୩

ଆଗେ ଅନ୍ତହୀନ ରାସ୍ତା,
ପଛେ ଦୀର୍ଘ ପଥ;
ମଝିରେ ମୁଁ ଖୋଜିବୁଲେ
ମୋ ନିଜ ଅସ୍ତିତ୍ୱ ।-୪
ଛାଡି ଦେଲି ସବୁ ପ୍ରଶ୍ନ,
ଛାଡିଲି ଉତ୍ତର
ପାଇଲିନି ଶେଷ ଯାଏ
ଠିକଣା ମୋହର ।-୫
ବିକଳ୍ପ ତେଜିଲି ସବୁ
କରିଲି ସଂକଳ୍ପ
ତ୍ୟାଗ କରି ଅହଂକାର
ରଖି ତା' ସମୀପ ।-୬
ମଞ୍ଜୁବଳା କବି

# କ୍ଷୁଦ୍ରର ମହତ୍ୱ

କ୍ଷୁଦ୍ର ଏକ ଅଣୁ ଅଟେ ଧ୍ୱଂସ ଅବତାର
କ୍ଷୁଦ୍ର ମଧ୍ୟେ ରହିଥାଏ ସତ୍ତା ବିରାଟର |=୧=

ଆଶା କ୍ଷୁଦ୍ର ହେଲେ ମଧ୍ୟ ବଞ୍ଚିବା ସାହାରା
ନ ରହିଲେ ଟିକେ ଆଶା ନାହିଁ କିଛି ଆଶ୍ରା | =୨=

କ୍ଷୁଦ୍ର କ୍ଷୁଦ୍ର କର୍ମ ନେଇ ଗଢ଼ା ଏ ସଂସାର
ଛୋଟ ଛୋଟ କଥା ନେଇ ନିଜ ହୁଏ ପର | =୩=

କ୍ଷୁଦ୍ର ବୀଜ ମଧ୍ୟେ ଲୁଚିଥାଏ ମହାଦ୍ରୁମ |
କ୍ଷୁଦ୍ର ବିନ୍ଦୁ କାକରରେ ଦିଶେ ସପ୍ତବର୍ଣ୍ଣ | =୪=

ଛୋଟ ଛୋଟ ଅଶା ନେଇ ଗତି ମାନବର
ଆଶା ବୃନ୍ତ ଗଲେ ଭାଙ୍ଗି ମରଣ ତାହାର| =୫=

କ୍ଷୁଦ୍ର ଶିଶୁ ହେଲେ ମଧ୍ୟ ହସାଏ ସଭିଙ୍କୁ
କ୍ଷୁଦ୍ରତମ ସୂତ୍ରେ ଥାଏ ଇଙ୍ଗିତ ବ୍ରହ୍ମଙ୍କୁ | =୬=

କ୍ଷୁଦ୍ର କ୍ଷୁଦ୍ର ବର୍ଣ୍ଣ ମିଶି ଗଠିତ ସାହିତ୍ୟ
କ୍ଷୁଦ୍ର ଏକାକ୍ଷର ମନ୍ତ୍ରେ ଶ୍ରେଷ୍ଠତମ ସତ୍ୟ | =୭=

କ୍ଷୁଦ୍ର ଶିଶୁ ! ହେଉ କ୍ଷୁଦ୍ର ତୁମ ସଂସାଧନ
ମନୋବଳେ ମହାକର୍ମ ହେବ ସମ୍ପାଦନ | =୮=

ମଞ୍ଜୁବାଳା କବି   ଓଁ ଶାନ୍ତିଃ

# ନବବଧୂର ଯାତ୍ରା

ପ୍ରାଣ ଯିବ ମୋର ପ୍ରିୟ ପାଶେ
... ତେଜି ସ୍ମୃତି ଏହି ପରଦେଶେ |

ଭାମିନୀ ଅବନୀ ମାୟାଦେଶେ
କାମିନୀ ରଜନୀ ମୋହଫାଶେ

ମୋହିନୀ ଚାନ୍ଦିନୀ ପାଶେ ଆସେ
ମାନିନୀ ମଉନୀ ମନ ହସେ |

କିନ୍ତୁ, ନବବଧୂ ପ୍ରିୟା ଭାଷେ --
ଛାଡ଼ିଦିଅ, ଯିବି ପ୍ରିୟ ପାଶେ |

... ତେଜି ସ୍ମୃତି ଏହି ପରବାସେ
=1=

ଚିତ୍ତବିମୋହିନୀ ପରବାସ
ଜନ୍ମକର୍ମଭୋଗପରବଶ,

ଯୁଗ ଯୁଗାନ୍ତରୁ ଦେଶେ ଦେଶେ
ଖୋଜି ବୁଲେ ପ୍ରାଣପ୍ରିୟ ଆଶେ |

ଅନ୍ତର ଭିତରୁ ପ୍ରିୟ ମୋର
ଆଲିଙ୍ଗନ କରେ ବାରମ୍ବାର |

ତେଣୁ ବାହୁଡ଼ିବି ତା'ର ଦେଶେ
ଛାଡ଼ି ମାୟାମୋହ ପରବାସେ |

... ତେଜି ସ୍ମୃତି ଏହି ପରଦେଶେ
ହଜି ଯିବି ସେହି ବିଶ୍ୱାୟୁସେ |
=2=

*ମଞ୍ଜୁବାଳା କବି*
୨୩ ଫେବୃଉୟାରୀ ୨୦୧୬



# ପ୍ରାଚୀ ବିଭାବସୁ

ପ୍ରାଚୀ ଗଗନରେ ଲୋହିତ ରଶ୍ମିରେ
ସୁନୀଳ ସାଗରେ ସ୍ନାନ
ସ୍ନାନ ସାରି ତୁମ୍ଭେ ରକ୍ତବର୍ଣ୍ଣ ପାଟେ
ଦିଅ ସର୍ବେ ଦରଶନ | -୧

ତୁମ ଆବାହନେ ଶଙ୍ଖ-ଘଣ୍ଟଧ୍ୱନି
ଝଙ୍କାରେ ଭେଦି ଗଗନ
ମନ୍ଦିରେ କମ୍ପିତ ଓଁକାର ଧ୍ୱନି,
ତବ ନାମ ସଂକୀର୍ତ୍ତନ | -୨

ତୁମ୍ଭ ଆଗମନେ ବିହଙ୍ଗେ ମିଳନ୍ତି
ସୁନେଲି ଆକାଶ କକ୍ଷେ,
କୈବର୍ତ୍ତ ଗମନ କରନ୍ତି ହରଷେ
ନୀଳ ସାଗରର ବକ୍ଷେ | -୩

ପ୍ରକୃତି ଜନନୀ ଅଙ୍ଗେ ଅଙ୍ଗେ ପୁଣି
ଆଣେ ଦ୍ୟୁଲୋକ ପ୍ରତୀତି
ତାହାରି ଭିତରେ ସବୁରି ଅନ୍ତର
ନୃତ୍ୟ କରେ ନିତିପ୍ରତି | -୪

ତୁମରି ପରଶେ ନିତ୍ୟ ସଦ୍ୟ ସୃଷ୍ଟି
ଚାଲିଥାଏ ଅହର୍ନିଶି,
ଦିବସ, ରଜନୀ, ମାସ, ଋତୁ, ବର୍ଷ,
ଅମାବାସ୍ୟା, ପୂର୍ଣ୍ଣମସୀ | -୫

ଆକର୍ଷଣେ ତୁମ ଆକର୍ଷିତ ହୋଇ
ସର୍ବେ କରନ୍ତି ଚଳନ,
ପୃଥ୍ୱୀ, ଗ୍ରହ, ଚନ୍ଦ୍ର ଯେଝା ସ୍ଥାନେ ରହି
ସଦା କରନ୍ତି ଘୂର୍ଣ୍ଣନ | -୬

ଅନନ୍ତ କାଳରୁ ଘେନି ଦିବ୍ୟାଲୋକ,
ଚେତନାର ବିତରଣ ,
ଯେ ଦିଏ ତୁମକୁ ଆଲୋକ ଭଣ୍ଡାର
ତା ପଦେ କୋଟି ପ୍ରଣାମ |-୭

ଓଁ ଶାନ୍ତି *ଧ୍ୟାନୀ ସାକ୍ଷି* (ମଞ୍ଜୁବାଳା କବି)



# ପ୍ରଥମ ମଧୁ

କିଏ କହେ ପୂର୍ଣ୍ଣ କିଏ କହେ ଶୁନ୍ୟ
କେଉଁଠି ନ ଥାଇ ସବୁଠି ଅଛ
ଶୁଣି ଶୁଣି ମୁଁ ପାଗଳ ହେଲି |

କହେ  କିଏ ପୁଣି ମନ ହୁଏ ବନ୍ଧ,
ମନ ମଣେ ମୁକ୍ତ, ମନ ଖେଳେ ଖେଳ
ଭାବି ଭାବି କେତେ ପ୍ରଳାପ କଲି || ୧ ||

ଗୀତାରେ ରହିଛ, ଭାଗବତେ ଅଛ
ଦର୍ଶନେ, ଶ୍ରୁତିରେ, ଅଛ ପୁଣି ବେଦ ଶାସ୍ତ୍ରେ,

ଏ ଜାତି ସେ ଜାତି, ଏ ଧର୍ମେ ସେ ଧର୍ମେ,
ପ୍ରକୃତିରେ ଅବା ଅଛ ପରମ୍ପରା ଶିରେ ||୨||

କେତେ ମୁଁ ଭ୍ରମିଲି, ଭ୍ରମରେ ପଡ଼ିଲି,
ସବୁଠି ଖୋଜିଲି, ପାଷାଣ ପାଲଟି
କେବେ ଅବା ବସି ଗଲି |

ଦେଖିଲି ଗ୍ରନ୍ଥରେ ପରିସ୍ଫୁଟ ଶବ୍ଦ,
ତୁମର ସୁଗନ୍ଧ ତିଳେ କାହିଁ ନ ପାଇଲି ||୩||

କହିବନି ଆଉ ଖୋଜି ନାହିଁ ବୋଲି
ଦୋଷ ବି ଦେବନି, ମୁଁ ତ ନୁହେଁ ନବ-ବଧୂ |

ମୁଁ ଅତି ପ୍ରାଚୀନ ସତ୍ୟ ଚିରନ୍ତନ,
ପ୍ରେମର ସ୍ପନ୍ଦନ ମୁଁ ତୁମ ପ୍ରଥମ ମଧୁ ||୪||

ମଞ୍ଜୁବାଳା କବି    ଓଁ ଶାନ୍ତିଃ

# ପ୍ରଥମପୁରୁଷ

ସାରା ବ୍ରହ୍ମାଣ୍ଡରେ ତୁମରି ବିସ୍ତାର, ସଙ୍କୁଚିତ ହୃଦୟରେ
ଅଗଣିତ ପିଣ୍ଡେ ସୃଷ୍ଟି ଦଣ୍ଡେ ଦଣ୍ଡେ, ପୁଣି ତୁମେ ପ୍ରଳୟରେ | -୧
କୋଟି କୋଟି ଗର୍ଭେ ଏକସଙ୍ଗେ ଜନ୍ମ, ମରଣର ବିଭୀଷିକା,
ଏତେ ଦ୍ୱନ୍ଦ୍ୱ ଧରି ଚାଲିଛ କିପରି, ବନାଅ ସଭିଙ୍କୁ ବୋକା ? -୨

ଓତପ୍ରୋତ ଭାବେ, ଅଣୁବୃହତ୍ ଭବେ, କେଉଁଥିରେ ନୋହି ଯୁକ୍ତ
ମାୟାଜାଲେ ଭରି ସଭିଙ୍କୁ ଆବୋରି କୁହ -- "ହୁଅ ମାୟାମୁକ୍ତ |" -୩
ରାଜନୀତି ତୋର ଜନେ ଅଗୋଚର, ଖେଳୁଅଛୁ ଅବିରଳ,
ଗ୍ରହ-ନକ୍ଷତ୍ରକୁ ଗୋଟି ଖେଳ କରି ଗଡ଼ାଉଛୁ କାଳ କାଳ | -୪

କାଳରୁ ରହିତ, କାଳେ କାଳେ ସ୍ଥିତ, କରୁଛ ଦ୍ୱୈତ ଶାସନ,
ଆତ୍ମଜ୍ଞାନୀମାନେ କୁହିଥା'ନ୍ତି ଜନେ -- "ଏକତ୍ୱରେ ଦରଶନ |" -୫
ପ୍ରଶ୍ୱାସରେ ଯାଇ ପ୍ରାଣକୁ ସଞ୍ଚାରି ଚଳମାନ ଅବିରତେ,
ବିଜ୍ଞାନୀର ସମ ଦେହେ ଦେଇ ଅନ୍ନ ରକତ ଗଢୁ କେମନ୍ତେ ? -୬

ବେଦ ସ୍ମୃତି ଶାସ୍ତ୍ରେ, ପରାର୍ଦ୍ଧ ସଂଖ୍ୟାରେ ଶବ୍ଦର ଭରି ଭଣ୍ଡାର
ହୋଇ ଶବ୍ଦାତୀତ ପୁଣି ଗୁଣାତୀତ ସଂସାରେ କରୁ ବିହାର | -୭
ଏଇକ୍ଷଣି ପୁଣି ହାତେ ହାତ ଧରି ଲେଖିଲୁ ତୋର ପ୍ରଚାର
ଶୁଣି ଗାଳି ଏତେ, ଭଲ ପାଉ ମୋତେ; ପ୍ରଣିପାତ ବାରମ୍ବାର | -୮



ମଞ୍ଜୁବାଳା କବି

ଓଁ ଶାନ୍ତିଃ

# ପ୍ରତିସ୍ପର୍ଦ୍ଧା



ଅଲାଜୁକୀ ଚାନ୍ଦ ଆଉ ଏତେ ମୋତେ ଚାହାଁ ନା |
ଜାଣିଛି ମୁଁ ତୋର ଏଇ ମିଛମାୟା ଜୋଛନା ||

ନାହିଁ  କିଛି ତୋର ନିଜ ଆଲୋକର ସମ୍ଭାର,
ସବୁ ତୁ ଉଧାର ଆଣି ଭାବୁଛୁ କି ନିଜର ?

ଲୁଚି ଲୁଚି ଯାଉ ତୁହି ଅମାବାସ୍ୟା ରାତିରେ --
ଜାଣିଛି ମୁଁ ଅଭିସାର କରୁ କାହା ସାଥିରେ ||

ସରଳୀ, ତୁ ଜାଣି ନାହୁଁ ତୋର ସାଥି କାହାକୁ
ଦିବସରେ ଅପଲକେ ଚାହେଁ ଯେଉଁ ଆନକୁ ||





ସୂର୍ଯ୍ୟମୁଖୀ ନାମ ତା'ର, ସିଏ କାଳେ ସୁନ୍ଦରୀ,
ସୂରୁଯକୁ ଦେଖି ଛାତି ଫୁଲି ଉଠେ ତାହାରି ||

ସୂର୍ଯ୍ୟମୁଖୀ, ଚାନ୍ଦ ଶୁଣ ! ତୁମେ ଦୁହେଁ କାଲିର,
ମୁ କିନ୍ତୁ ତା' ଚିରସାଥୀ, ସୀମାତୀତ କାଳର ||

ତେଣୁ ଆଲୋ ଚାନ୍ଦ ! ଏତେ ଫୁଲେଇ ତୁ ହୁଅ  ନା !
ସେ ଫୁଲକୁ ଚାହିଁ ହସ, ଆଉ ମୋତେ ଚାହାଁ ନା ||

ମଞ୍ଜୁବାଳା କବି

୨୬-୦୨-୨୦୧୬  [ଓଁ ଶାନ୍ତିଃ]

# ସ୍ୱପ୍ନଭଙ୍ଗ



ଧରି ଯେତେ ଭାବ    ଭବେ କଳି ଭାବ
ସମୟର ସ୍ରୋତେ ଚଳି    ହେଲା  ଭାବନାର ବଳି
ବାରମ୍ବାର ଭାବ ହନନ ହେଲା
ଭାବିନୀ ଭାବନା  କୂଳ ଲଙ୍ଘିଲା ||    -1-

ଧୀରେ ଧୀରେ ସୂତା    ଗଣ୍ଠି ହୁଗୁଳିଲା
ଯେତେ ତାଳି ଥିଲା    ଫୁଙ୍ଗୁଳା ହେଲା
ରାଗ-ବିରାଗରୁ ଅପସରି ଗଲା
ଜଳଧିଜଳେ ନଦୀସ୍ରୋତ ମିଶିଲା ||-2-

ପଛକୁ ଆଉ ମନ    ଚଳିଲା ନାହିଁ
କ୍ଷିପ୍ର ବେଗରେ ଧାଇଁ    ଗଲା ପଳାଇ
ଦିଶେ ନା ଦୂରକୁ, ନ ଦେଖି ପାଖକୁ
ଧରିଲି ସ୍ୱ-ଭାବେ ନିଜେ ନିଜକୁ ||    -3-

ସବୁ ତ ସ୍ୱପ୍ନ ଏଠି    ସ୍ୱପ୍ନରେ ସ୍ୱପ୍ନ
ଭାବରେ ଚାଲେ ଖେଳ    ନିରବଚ୍ଛିନ୍ନ
ସ୍ୱପ୍ନରେ ସ୍ୱପ୍ନକୁ ବିସର୍ଜିତ କଲି,
ସହଜ ସ୍ୱଭାବେ ଭାବେ ସ୍ଥିତ ହେଲି ||  -4-

ଶବ୍ଦ ଗଲେ ଚଳି    ଆକାଶ ପଥେ
ରୂପ ଗଲା ଚାଲି    ଆଲୋକ ସାଥେ
ଲେଉଟିଲା ନଦୀ ଉଦ୍‌ଗମସ୍ଥାନେ
ରହିଲା ଶାଶ୍ୱତ ଓଁକାର ଧ୍ୟାନେ ||    -5-

ମଞ୍ଜୁବାଳା କବି    ଓଁ ଶାନ୍ତିଃ

# ଉପରାଣ

ନିଜକୁ ଯେତେ ମୁଁ ପାଏ ନାହିଁ ଭଲ,
ଭଲ ପାଅ ତୁମେ ସେତେ |
ଭୁଲି ମୁଁ ନିଜକୁ ଗଲେ ଅନ୍ୟ ପାଶେ,
ତୁମେ ଭୁଲ ନାହିଁ ମୋତେ || -୧-

ସୂକ୍ଷ୍ମଠାରୁ ସୂକ୍ଷ୍ମ କମ୍ପନ-ସ୍ପନ୍ଦନ
ଜାଣ କ୍ଷଣେ ପ୍ରତିକ୍ଷଣେ |
ଯେତେ ଗତି ମୋର ଯୁଗ ଯୁଗ ଧରି,
ସାଥେ ଅଛ ଅନୁକ୍ଷଣେ || -୨-

ମୁଁ ତ ନୁହେଁ ରାଗୀ ନାଁ ଅଟେ ବିରାଗୀ,
ଜାଣେ ନାଁ ମୁଁ ନିଜେ କିଏ |
ଜାଣିଛି ଏ ମନ, ଚାଲିଛି ସ୍ପନ୍ଦନ,
କେ ଅବଶ୍ୟ ଭଲ ପାଏ || -୩-

ଆଜି ମନେ ପଡ଼େ ଆସିବାର ବେଳେ
ଆତ୍ମାର ଉତ୍ତରୀ ଦେଇ |
ଥିରି ଥିରି କାନେ ମଧୁର ବଚନେ
କହିଥିଲ ସତ୍ୟ ଏହି || -୪-

"ଯା' ସଖି ମୋର କର୍ମପଥେ ତୋର
କର୍ମରେ ରହିବୁ ଲୀନ |
ଆତୁରିତେ ଯେବେ ମୋତେ ତୁ ଝୁରିବୁ
ଖୋଲିବି ତୋ ଉପରାଣ ||" -୫-

ଶିରେ ଉପରାଣ ଦେଇ ମୁଁ ଚାରଣ
କଲେ ଦିଶେ ନାହିଁ କିଛି |
ତୁଙ୍ଗ ଶୃଖର କି ତଟିନୀ, ସାଗର,
ଅଗ୍ନି, ସୋମେ ଯାଏ ପଶି || -୬-

ଅଚେତନ ଚିତ୍ତେ ଏ ସଂସାର ପଥେ
ହେଲେ ଯେତେ ଅଗ୍ରସର |
ବିଶ୍ୱାସ-ଉତ୍ତରୀ ରଖିଅଛି ଶିରେ
କରି ନାହିଁ କେବେ ଦୂର || -୭-

ନିଃସଙ୍ଗରେ ଆଜି ଭରା ଏହି ଆଖି
ଝୁରେ ଆଜି ଅନ୍ତଃପୁରେ |
ଏବେ ଅବତରି ଉଠାଅ ଉତ୍ତରୀ,
ଡାକୁଛି ଅତି ଆତୁରେ || -୮--

ମଞ୍ଜୁବାଳା କବି ଓଁ ଶାନ୍ତିଃ

# କ୍ଷୁଦ୍ରର ମହତ୍ୱ

କ୍ଷୁଦ୍ର ଏକ ଅଣୁ ଅଟେ ଧ୍ୱଂସ ଅବତାର
କ୍ଷୁଦ୍ର ମଧ୍ୟେ ରହିଥାଏ ସତ୍ତା ବିରାଟର |=୧=

ଆଶା କ୍ଷୁଦ୍ର ହେଲେ ମଧ୍ୟ ବଞ୍ଚିବା ସାହାରା
ନ ରହିଲେ ଟିକେ ଆଶା ନାହିଁ କିଛି ଆଶ୍ରା | =୨=

କ୍ଷୁଦ୍ର କ୍ଷୁଦ୍ର କର୍ମ ନେଇ ଗଢ଼ା ଏ ସଂସାର
ଛୋଟ ଛୋଟ କଥା ନେଇ ନିଜ ହୁଏ ପର | =୩=

କ୍ଷୁଦ୍ର ବୀଜ ମଧ୍ୟେ ଲୁଚିଥାଏ ମହାଦ୍ରୁମ |
କ୍ଷୁଦ୍ର ବିନ୍ଦୁ କାକରରେ ଦିଶେ ସପ୍ତବର୍ଣ୍ଣ | =୪=

ଛୋଟ ଛୋଟ ଅଶା ନେଇ ଗତି ମାନବର
ଆଶା ବୃନ୍ତ ଗଲେ ଭାଙ୍ଗି ମରଣ ତାହାର| =୫=

କ୍ଷୁଦ୍ର ଶିଶୁ ହେଲେ ମଧ୍ୟ ହସାଏ ସଭିଙ୍କୁ
କ୍ଷୁଦ୍ରତମ ସୂତ୍ରେ ଥାଏ ଇଙ୍ଗିତ ବ୍ରହ୍ମଙ୍କୁ | =୬=

କ୍ଷୁଦ୍ର କ୍ଷୁଦ୍ର ବର୍ଣ୍ଣ ମିଶି ଗଠିତ ସାହିତ୍ୟ
କ୍ଷୁଦ୍ର ଏକାକ୍ଷର ମନ୍ତ୍ରେ ଶ୍ରେଷ୍ଠତମ ସତ୍ୟ | =୭=

କ୍ଷୁଦ୍ର ଶିଶୁ ! ହେଉ କ୍ଷୁଦ୍ର ତୁମ ସଂସାଧନ
ମନୋବଳେ ମହାକର୍ମ ହେବ ସମ୍ପାଦନ | =୮=

ମଞ୍ଜୁବାଳା କବି   ଓଁ ଶାନ୍ତିଃ